


# ଭାଗବତ
## ଧର୍ମ ସମୀକ୍ଷା



ପ୍ରଫେସର ଡକ୍ଟର କେଶବଚନ୍ଦ୍ର ସାହୁ

Digitized by srujanika@gmail.com

# ଉତ୍ସର୍ଗ

ଯିଏ ମୋତେ ହାତଧରି ଏ ପ୍ରେମଧର୍ମକୁ ଶିଖାଇଛନ୍ତି, ଆପଣର କରାଇଛନ୍ତି ସେହି ମହାପୁରୁଷ ଶ୍ରୀଶ୍ରୀ ବାପୁବାବାଙ୍କୁ ସମର୍ପଣ କଲି ।

ଶ୍ରୀ କେଶବ

Digitized by srujanika@gmail.com

## କୃତଜ୍ଞତା ଜ୍ଞାପନ

ମୋତେ ସଭା ସମିତିରେ ଏ ଭାଗବତ ଧର୍ମ ଉପରେ ଭାଷଣ ଦେବାକୁ ଯେ ସୁବିଧା ସୁଯୋଗ ଦେଇଛନ୍ତି ସେଇ ବାବାଜୀ ମହାରାଜ ଶ୍ରୀ ଚୈତନ୍ୟଚରଣ ଦାସଙ୍କୁ ଓ ଉତ୍କଳର ବିଭିନ୍ନ ଭାଗବତ ପ୍ରଚାର ସମିତିର କର୍ମକର୍ତ୍ତା ଓ ଶ୍ରୋତାମାନଙ୍କୁ କୃତଜ୍ଞତା ଅର୍ପଣ କରୁଛି ।

ଶ୍ରୀ କେଶବ

Digitized by srujanika@gmail.com

# ଭାଗବତ ଧର୍ମର ପ୍ରବର୍ତ୍ତନ

ଦେଶରେ ଅଧାର୍ମିକତାର କରୁଣ ଆଧାରିତ ବିପ୍ଳବ ଦେଖାଯାଉଥିବା ବେଳେ ମନୁଷ୍ୟର ମନ ସ୍ୱାର୍ଥରୁ ଯାଇ ପରାର୍ଥ, ଓ ପରମାର୍ଥ ଜୀବନର ଧର୍ମଧାରା ଆଡକୁ ଗତି କରୁଥିବାବେଳେ ଆଜି ମନରେ ପ୍ରଶ୍ନ ଉଠୁଛି ଯେ କେଉଁ ଶାସ୍ତ୍ର ଅଧ୍ୟୟନ ଦ୍ୱାରା ମନୁଷ୍ୟ ବିଚକ୍ଷଣ ହୁଏ । ଭାଗବତ ଧର୍ମର ବିଗ୍ରହ କଲାବେଳେ ମନରେ ସ୍ୱତଃ ପ୍ରଶ୍ନ ଉଠେ, ଭାଗବତ ଧର୍ମ କ'ଣ ? ତାକୁ କିଏ ଆଲୋଚନା କରିବ ? ଏ କଣ କେବଳ ବ୍ରହ୍ମ ଜାଣିବା ଲୋକର କାମ ? ବ୍ରାହ୍ମଣର ମୂଳ କେଉଁଠି ? କୁଳରେ, ସଦବୃତ୍ତିରେ ନା ଶିକ୍ଷାରେ ? ଗୋଟିଏ ପ୍ରଶ୍ନ ପୃଥିବୀରେ ସର୍ବଶ୍ରେଷ୍ଠ ପ୍ରୟୋଜନ କାର୍ଯ୍ୟ କଣ ? ଚିନ୍ତାକଲେ, ଅନୁଧ୍ୟାନ କଲେ, ବିଶ୍ଳେଷଣ କଲେ ଶାସ୍ତ୍ର ଅନୁସାରେ ଏହା କୁହାଯିବ ଯେ, ମନୁଷ୍ୟ ଶାସ୍ତ୍ର ଅଧ୍ୟୟନ କରି ବିଚକ୍ଷଣ ହୋଇପାରେନା, ହୋଇପାରେ ମହାପୁରୁଷମାନଙ୍କର ସଙ୍ଗଲାଭ ଦ୍ୱାରା । ଅନ୍ୟ ପ୍ରଶ୍ନଟିର ଉତ୍ତର ହେଉଛି ଯେ, କୁଳ ବା ଶିକ୍ଷାରେ ବ୍ରାହ୍ମଣତ୍ୱ ନାହିଁ । ବ୍ରାହ୍ମଣର ପ୍ରକୃତ ଲକ୍ଷଣ ହେଉଛି ବ୍ରହ୍ମଜ୍ଞାନ, ସଦ୍‌ବୃତ୍ତି ସଦାଚାର । ମନୁଷ୍ୟ ଶିକ୍ଷିତ ହୋଇପାରେ ମାତ୍ର ଦୁର୍ବୃତ୍ତ ହୋଇ ବ୍ରାହ୍ମଣ ହୋଇପାରିବ ନାହିଁ । ସେ ସବୁବେଳେ ପତିତ ମଧ୍ୟ ବ୍ରାହ୍ମଣରେ ପରିଗଣିତ ହୋଇପାରିବ ନାହିଁ । ସାଧୁସଙ୍ଗ ହିଁ ସର୍ବଶ୍ରେଷ୍ଠ ପ୍ରୟୋଜନ କାର୍ଯ୍ୟ । ଧର୍ମରାଜ ଅଶରୀରୀ ହୋଇ ପୁଣି ଯୁଧିଷ୍ଠିରଙ୍କୁ ଏହି ପ୍ରଶ୍ନ ପଚାରିଥିଲେ ଓ ଉତ୍ତର ପାଇ ଆନନ୍ଦିତ ହୋଇଥିଲେ । ଏହି ପୁଣ୍ୟ କାହାଣୀ ଆଜି ନ୍ୟାୟ ପଥରେ ଚାଳିତ କରିବ ଆମକୁ । ଘୃଣ୍ୟପଥରୁ ଆମକୁ ବଞ୍ଚାଇବ । ଏହାହିଁ ସାମାଜିକ ସାମ୍ୟ ।

ବେଦରେ ଶବ୍ଦ ପ୍ରଧାନ, ଭାଗବତରେ ଭାବପ୍ରଧାନ । ଏହି ଭାବକୁ ଆଶ୍ରୟ କରି ତଥାକଥିତ ସର୍ବଧର୍ମର ସମନ୍ୱୟ ପ୍ରତିଷ୍ଠା କରି ସାମାଜିକ ଜଘନ୍ୟତାର

Digitized by srujanika@gmail.com

ବିଳେପ ସାଧନ କରିହେବ । ସୁସଂସ୍କୃତ ସମାଜ, ସାମୂହିକ ଚିତ୍ତ ନିର୍ମାଣ, ଗଢ଼ି ତୋଳିବ ଏ ଅହିଂସକ ଭାଗବତ ଧର୍ମ ଓ ଆଣିବ ଏହାର ବିକାଶ । ଏହାକୁ ହିଁ ମାନବ ନବ ସଭ୍ୟତାର ପ୍ରାଣକେନ୍ଦ୍ର । ଏହି ଭାଗବତୀୟ ଭକ୍ତିବାଦ ଭାରତକୁ, ଭାରତୀୟ ଭକ୍ତି ଧର୍ମକୁ ରଖିଛି । ଭାଗବତ ଧର୍ମଗ୍ରନ୍ଥକୁ ଅତି ସମ୍ମାନ ଦେଖାଇ କୁହାଯାଏ ଶ୍ରୀମଦ୍ ଭାଗବତ । ଶିଖ୍ ଧର୍ମାବଲମ୍ବୀମାନେ ତାଙ୍କର ଧର୍ମଗ୍ରନ୍ଥକୁ ଗ୍ରନ୍ଥ ସାହେବ୍ ବୋଲି କହନ୍ତି । ଏହି ଭାଗବତରେ ଭଗବାନ, ଭଗବଦ୍ ଭକ୍ତିର ବିଶେଷ ଭାବରେ ବର୍ଣ୍ଣନା କରିଛନ୍ତି । ଯେ ଭଗବାନଙ୍କଠାରେ ସମସ୍ତ ସମର୍ପଣ କରିବ, ଭକ୍ତି କରିବ ତାକୁ କୌଣସି ଆଡ଼ୁ କାହୁ ଭୟ ନାହିଁ । ଯଦି ଭୟ ଆସେ, ତେବେ ତାର ଭକ୍ତି ଚିନ୍ତାରେ ଜଡ଼ତା ଅଛି, ଦୃଢ଼ତା ନାହିଁ । ସେ ଭକ୍ତ ଜୀବନ୍ତ ନୁହେଁ, ଜାଗ୍ରତ ନୁହେଁ । ଯଦି ଭଗବାନଙ୍କୁ ଭକ୍ତି କରିବ, ସେ ଆମକୁ ଉଦ୍ଧାର କରିବେ—ଏ ଭାବନା ଆଦୌ ଆମେ ଉପଲବ୍ଧି କରୁନା । ଭଗବଦ୍ ଭକ୍ତି ଆମକୁ କରିବ ନିର୍ଭୀକ, ଅଭ୍ୟୁତ୍ଥାନ୍, ଶକ୍ତିଶାଳୀ ।

ମୋର ଏହି ଦେହ, ଏହି ଦେହ ଭାବନା, ଦେହ ବୁଦ୍ଧି, ଦୃଢ଼ ହୋଇଯାଇଥିବାରୁ, ମଜ୍ଜାଗତ ହୋଇଯାଇଥିବାରୁ ଭୟ ଜନ୍ମେ । ଆମେ ସମସ୍ତେ ସେହି ପରମାତ୍ମାଙ୍କ ସନ୍ତାନ । ଏହି ଭାବନା ଆମର ବୁଦ୍ଧି ବ୍ୟାପକ କରେ । ଭଗବଦ୍ ଭକ୍ତ ମଣିଷକୁ ନିଜର ଦେହଠାରୁ ଅଲଗା କରି ସମଗ୍ର ବିଶ୍ୱ ସହିତ ମିଳାଇ ଦିଏ, ବିଶ୍ୱାତ୍ମାନୁଭବ ଆସେ । ଦେହ ଭାବସ୍ଥଳେ ବିଶ୍ୱାତ୍ମଭାବ ଆସେ । ବିଶ୍ୱ ଓ ମୋ ମଧ୍ୟରେ କୌଣସି ଭେଦ ନାହିଁ । ଏହାହିଁ ବିଶ୍ୱାତ୍ମଭାବ । 'ଜୀବନ୍ତ ଭଗବାନ ଆମ ଭିତରେ । ଆମେ ନିର୍ବୋଧଭାବରେ ବିଶ୍ୱାସ କରି ମନ୍ଦିର ଗଢ଼ିବାରେ ବ୍ୟସ୍ତ' । 'ବହୁତ ଦିନପରେ ମୁଁ ନିଜକୁ ସାକ୍ଷାତ କଲି' କହି ଉଠିଲେ ବିବେକାନନ୍ଦ ଓ ରାମଦାସ । ସେ ସେତେବେଳେ ପରମାତ୍ମା—ପ୍ରସନ୍ନତା ଅନୁଭବ କଲେ । ଏହି ଆତ୍ମା ପ୍ରାପ୍ତି ନିଜର ଉପଲବ୍ଧି, ଭାଗବତ ପ୍ରାପ୍ତିର ସରଳ ଉପାୟ ଭଗବାନ କହିଛନ୍ତି । ଏହାର ନାମ ହେଲା ଭଗବଦ୍ ଧର୍ମ, ଭାଗବତର ଅର୍ଥ ଭକ୍ତି । ଏ ଧର୍ମରେ ଭକ୍ତି, ପ୍ରେମପ୍ରଧାନ ମାର୍ଗ ମାତ୍ର ସରଳମାର୍ଗ । ଏହାର ଆଶ୍ରୟ ନେଲେ କେବେହେଁ ପ୍ରମାଦ ନାହିଁ । ଆଖି ବୁଜି ଧାଇଁ ଗଲେ ବି ଖସିବ ନାହିଁ, ପଡ଼ିବ ନାହିଁ; କାରଣ ସବୁ ତ ସମର୍ପିତ

Digitized by srujanika@gmail.com

ଭଗବାନଙ୍କୁ— ଯଦଦବା ପଡ଼ିବ ତେବେ ଭଗବାନଙ୍କ କୋଳରେ । ଯେଉଁଠି ମଣିଷ ଭଗବାନଙ୍କୁ ଅର୍ପଣ କରିବାର ସ୍ୱଚ୍ଛ ମନ ରହିଲା, ସେଠାରେ ଭୁଲ କାମ ମୂଳରୁ ହେବ ନାହିଁ । ଅର୍ପଣ କରିବା କଥାଟି ମନେପଡ଼ିବା ମାତ୍ରେ ମନ୍ଦ କାମ ବନ୍ଦ ହୋଇଯିବ । ଏଥିରେ ଆମ କର୍ମକୁ ନିୟନ୍ତ୍ରଣ କରିବା କଥା ନାହିଁ । ଆମେ ଇନ୍ଦ୍ରୀୟଦ୍ୱାରା ବୁଦ୍ଧିଦ୍ୱାରା ଦେହ, ମନ ଓ ବାକ୍ୟ ଦ୍ୱାରା ଯେଉଁ କର୍ମ କରିବୁ ସବୁ ଭଗବାନଙ୍କୁ ଅର୍ପଣ କରିବା । ଏହାହିଁ ଏ ଭାଗବତ ଧର୍ମର ସରଳ ମାର୍ଗ, ବିଚକ୍ଷଣ ଚତୁରତା । ନିଜଠାରୁ ଅନ୍ୟ କେହି ଅଲଗା ନୁହନ୍ତି, ଭିନ୍ନ ହୋଇ କିଛି ନାହିଁ. ଏ ସଂସାରରେ ମୁହିଁ ସବୁ । ଆଉ ଅନ୍ୟ କେହି ନାହାନ୍ତି— ଏ ଭାବନାରେ ଭାବାନ୍ୱିତ ହେଲେ ଆସିବ ହୃଦୟରେ ପରମେଶ୍ୱରଙ୍କ ସହିତ ମିଳନର ଇଚ୍ଛା । ସେ ନିଜକୁ ଭୁଲିଯିବ; ନିଜତ୍ୱକୁ ଭୁଲି ଯିବ ଏକାଗ୍ର ଭକ୍ତିରେ ପରମାତ୍ମାଙ୍କୁ ଖୋଜିବ, ଡାକିବ, ଭଜନ କରିବ, ଏକ ହୋଇଯିବ । ସବୁ ଭେଦ ଲୋପ ହୋଇଯିବ । ଜଗତରୁ ବିରୋଧ ମୂଳପୋଛି ହେବ । ଜଗତରେ କୌଣସି ଭୟ ରହିବ ନାହିଁ । ସମସ୍ତଙ୍କ ହିତରେ ନିଜ ହିତ ନିହିତ ହେବ ।

ମନର ଗୋଲାପ ହୋଇ ମଣିଷ ଭଲମନ୍ଦ କାମ କରେ, ଭେଦଭାବ ସୃଷ୍ଟି କରେ । ତେଣୁପାଇଁ ବୁଦ୍ଧିମାନ ଲୋକ ମନକୁ ଆୟତରେ ରଖିବା ଉଚିତ । ଏହାହିଁ ମନ-ନିଗ୍ରହ ।

ସବୁ ପ୍ରାଣୀମାନଙ୍କ ମଧ୍ୟରେ ଭଗବାନଙ୍କୁ ଦେଖିବା ପୁଣି ନିଜକୁ ସବୁ ପ୍ରାଣୀମାନଙ୍କ ମଧ୍ୟରେ ଦେଖିବା । ପ୍ରାଣୀମାନେ ଭଗବାନଙ୍କ ମଧ୍ୟରେ ଅଛନ୍ତି ଏବଂ ଭଗବାନ ପ୍ରତ୍ୟେକଠାରେ ଅଛନ୍ତି । ଆମ ନିଜ ମଧ୍ୟରେ ସର୍ବଭୂତ ଅଛନ୍ତି ଏବଂ ଆମେ ନିଜେ ସର୍ବଭୂତରେ ଅଛୁ । ଜଡ଼, ଚେତନ, ମଣିଷ, ପରମେଶ୍ୱର ମଧ୍ୟରେ ଓ ସେମାନଙ୍କ ଭେଦରେ ଅଭେଦ ଦେଖିବା ହିଁ ପ୍ରେମଧର୍ମ ।

— — —

Digitized by srujanika@gmail.com

# ଭାଗବତ ଧର୍ମର ଆବିଷ୍କର୍ତ୍ତା ବ୍ୟାସଦେବ

ଦାସ ଥିଲା ଜଣେ ବୁଢ଼ା କେଉଟ—ମାଛ ମାରେ, ପେଟ ପୋଷେ। ଡଙ୍ଗା ଦ୍ୱାରା ଲୋକଙ୍କୁ ପାର କରାଏ ଯମୁନା ନଦୀ। ବାତ୍ୟା, ବନ୍ୟା, ମେଘ, ଘଡ଼ଘଡ଼ିକୁ ମଧ୍ୟ ଦାସ ଡରେନା; ସେ ଡଙ୍ଗା ବାହିଯାଏ। ଦୁଃଖ ଆସୁ, କଷ୍ଟ ଆସୁ, ଯାତନା ଆସୁ ମାତ୍ର ଦାସ ତାର କର୍ତ୍ତବ୍ୟରେ କେବେ ହେଳା କରେନା। ବଡ଼ ନିଷ୍ଠାପର। ତାର ଗୋଟିଏ ପାଳିତା କନ୍ୟା ଥିଲା। ସେ ତାକୁ ପାଇଥିଲା ଯମୁନା ନଦୀରୁ। ତାର ନାମ ଥିଲା ସତ୍ୟବତୀ। ସେ ତାର ବାପାଙ୍କୁ ସାହାଯ୍ୟ କରୁଥିଲା ମାଛ ଧରିବାରେ, ମାଛ ଶୁଖାଇବାରେ, ଡଙ୍ଗା ବାହିବାରେ। ତାର ସୁନ୍ଦରିଆ ବୁଲ୍‌ବୁଲିଆ ଚେହେରା, ସୁନା ରଙ୍ଗର କେଶ; ତାର ଖେଳ, ନାଚ ଯମୁନାକୂଳର ସୌନ୍ଦର୍ଯ୍ୟକୁ ଦୁଇଗୁଣ କରିଥିଲା। ଦାସ ସବୁ ଦୁଃଖ ଭୁଲି ଯାଉଥିଲା ସତ୍ୟବତୀକୁ ଦେଖି। ସେ ଥିଲା ମାଛୁଆମାନଙ୍କର ମୁଖିଆ ଲୋକ। ଦିନକର କାର୍ଯ୍ୟ ସାରି ଦାସ ଖାଇବସିଲା ସନ୍ଧ୍ୟାରେ। ସତ୍ୟବତୀ ତାର ପିତାଙ୍କୁ ଖୁଆଉ ଥାଏ। ଏହି ସମୟରେ ଦାସ ଶୁଣିପାରିଲା ଗୋଟିଏ ଶବ୍ଦ। ଦାସ ତାର ଝିଅକୁ କହିଲା, ବାହାରକୁ ଯାଇ ଆଗନ୍ତୁକଙ୍କୁ ଦେଖିବା-ପାଇଁ। ସତ୍ୟବତୀ ବାପାକୁ ତାର କହିଲା ଯେ ଜଣେ ଲୋକ ତାଙ୍କର କେଶକୁ ବାନ୍ଧିଛନ୍ତି, ହାତରେ ପାଣିପାତ୍ର, ଅନ୍ୟ ହାତରେ ବାଡ଼ିଟିଏ, ଗଳାରେ ମାଳି ଓ ଗୋଡରେ ଖଡ଼ମ, ଦେହରେ ଗଛର ବକ୍ କଳ। ଦାସ ସତ୍ୟବତୀକୁ କହିଲା, "ସେ ଜଣେ ଋଷି। ମୁଁ ତ ଖାଉଛି। ତୁ ତାଙ୍କୁ ଟିକେ ନଦୀ ପାରି କରି ଦେ। ଡେରି କଲେ ସେ ରାଗିବେ, ଅଭିଶାପ ଦେବେ।"

ସେ ଋଷିକୁ ଡଙ୍ଗାରେ ବସାଇ ବାହିବାକୁ ଲାଗିଲା ସତ୍ୟବତୀ। ଡଙ୍ଗା ନଦୀର ଆରପାରିରେ ପହଞ୍ଚିଲା। ଋଷି ସତ୍ୟବତୀ ଆଡକୁ ଅନାଇଲେ। ଚନ୍ଦ୍ରାଲୋକ ପରି ସେ ସୁନ୍ଦରୀ, ମାତ୍ର ଆଇଁଷ ଗନ୍ଧ ଭାସି ଆସୁଥିଲା ତାର ଦେହରୁ। ଋଷି ନିଜର ତପୋବଳରେ ତାର ସେ ଗନ୍ଧକୁ ଦୂର କଲେ, ଭରିଦେଲେ ତାର ଶରୀର କସ୍ତୁରୀର ଗନ୍ଧରେ। ସତ୍ୟବତୀ ବୁଝିପାରିଲା; ହସି

Digitized by srujanika@gmail.com

ଉଠିଲା ତାର ପ୍ରାଣ । ଋଷିଙ୍କର ପ୍ରାଣ ଶିହରି ଉଠିଲା । ଉଚ୍ଚାଟି ଲାଗିଲା ଗୋଟିଏ ଶ୍ରେଷ୍ଠ ପାହାଡ଼ରେ । ଗଛପତ୍ର ଭରା ସ୍ଥାନଟି, ଦୁଇ ସାଥିର ମିଳନ ହେଲା । ସେ ଥିଲେ ଋଷି ପରାଶର । ବ୍ୟାସଦେବ ହେଲେ ପରାଶର ଓ ସତ୍ୟବତୀଙ୍କ ସନ୍ତାନ ।

ବ୍ୟାସଦେବ ଏ ସୃଷ୍ଟିରେ ନିଜର ଲେଖନୀ ଦ୍ୱାରା ବିପ୍ଲବ ଆଣିଥିଲେ— ଗୀତା ଜରିଆରେ, ମହାଭାରତ ଦ୍ୱାରା, ବେଦକୁ ବିଭାଜନ କରି ଭାଗବତକୁ ସୃଷ୍ଟି କରି, ସୃଷ୍ଟିକୁ ମଧ୍ୟ ମସ୍ତ କରି, ଧର୍ମଚକ୍ର ପ୍ରବର୍ତ୍ତନ କରି, ଆଧ୍ୟାତ୍ମିକତାର ଉତ୍ଥାନ ଆଣି, ଜୀବନଦର୍ଶନ ସମସ୍ତଙ୍କୁ ଆସ୍ୱାଦନ କରାଇଥିଲେ ।

ତାଙ୍କୁ କେହି କେହି କୃଷ୍ଣଦ୍ୱୈପାୟନ ବୋଲି କହନ୍ତି । କୃଷ୍ଣ ମାନେ— ନୀଳ ରଙ୍ଗ, ଦ୍ୱୈପାୟନ—କାରଣ ସେ ଜନ୍ମ ହୋଇଥିଲେ ଯମୁନାର ଗୋଟିଏ ଶ୍ରେଷ୍ଠ ଦ୍ୱୀପରେ । ତାଙ୍କୁ କେହି କେହି ବେଦବ୍ୟାସ ବୋଲି କହନ୍ତି । କାରଣ ସେ ବେଦକୁ ୪ ଭାଗରେ ବିଭାଗ କରିଥିଲେ । ତାଙ୍କର ଆଶ୍ରମ ଥିଲା ବଦରୀରେ ତେଣୁ ତାଙ୍କର ନାମ ମଧ୍ୟ ଥିଲା ବାଦରାୟଣ । ଏହିପରି କେତେ କ'ଣ ନାମ ଦେଇ ଲୋକେ ତାଙ୍କୁ ଡାକୁଥିଲେ, ସମ୍ମାନ କରୁଥିଲେ ।

ଯୌବନରେ ସେ ବେଦ, ଶାସ୍ତ୍ର, ପୁରାଣ, କବିତା, ଇତିହାସ ଇତ୍ୟାଦି ଅଧ୍ୟୟନ କରିଥିଲେ । ତାଙ୍କର ବୁଦ୍ଧିର ପ୍ରଖରତା, ଜ୍ଞାନର ବିଚକ୍ଷଣତା ସମସ୍ତଙ୍କୁ ମୁଗ୍ଧ କରିଛି, ଆଣିଛି ଧର୍ମ ବିପ୍ଳବ ।

ମାତା ସତ୍ୟବତୀଙ୍କୁ ପ୍ରଣାମ କରି ବ୍ୟାସଦେବ କହିଲେ, 'ମା ! ମୋତେ ମନେ ପକାଇଲା ମାନେ ମୁଁ ଆସିବି ।' ପଦଧୂଳି ନେଇ ସେ ଗଲେ ବଦରୀ ନିଜର ତପସ୍ୟା ପାଇଁ ।

କେତେବର୍ଷ ବିତିଗଲା । ହସ୍ତିନାବତୀରେ ରାଜା ଶାନ୍ତନୁ ରାଜତ୍ୱ କରୁଥିଲେ । ସେ ପରେ ଯମୁନାନଦୀ କୂଳରେ ସତ୍ୟବତୀଙ୍କୁ ଭେଟିଲେ । ତାଙ୍କୁ ବିବାହ କଲେ । ତାଙ୍କର ଦୁଇଟି ପୁଅ ହେଲେ । ବିଚିତ୍ରବୀର୍ଯ୍ୟ, ଚିତ୍ରାଙ୍ଗଦ । ଚିତ୍ରାଙ୍ଗଦ ପିଲାଦିନେ ମରିଗଲେ । ବିଚିତ୍ରବୀର୍ଯ୍ୟ ବିବାହ କଲେ ଅମ୍ବିକା ଓ ଅମ୍ବାଳିକାଙ୍କୁ ମାତ୍ର ନିଃସନ୍ତାନ ଭାବେ ସ୍ୱର୍ଗାରୋହଣ କଲେ । ଏହିପରି ବଂଶ ଲୋପ ହେଲାପରେ ସତ୍ୟବତୀ ବଡ଼ ଦୁଃଖିତ ହେଲେ । ସେ

Digitized by srujanika@gmail.com

କଣ କରିବେ ବୁଝି ପାରିଲେ ନାହିଁ । ଏହି ସମୟରେ ତାଙ୍କ ପୁତ୍ର ବ୍ୟାସଙ୍କ କଥା ମନେପଡ଼ିଲା । ବ୍ୟାସଦେବ ହସ୍ତିନାବତୀକୁ ଆସି ମା'ଙ୍କୁ ଦେଖା କଲେ । ମା ପରିବାରର ଦୁଃଖକଥା କହିବାରୁ ବ୍ୟାସଦେବ ଦୁଇ ବୋହୂ ଅମ୍ବିକା ଓ ଅମ୍ବାଳିକାଙ୍କୁ ଆଶୀର୍ବାଦ କଲେ, ଦୁଇ ପୁତ୍ର ସନ୍ତାନ ଜାତ ହେଲେ । ଅମ୍ବିକାଙ୍କର ଧୃତରାଷ୍ଟ୍ର ଓ ଅମ୍ବାଳିକାର ପାଣ୍ଡୁ ଜନ୍ମ ହେଲେ । ରାଜପ୍ରାସାଦର ଗୋଟିଏ ଦାସୀଙ୍କର ମଧ୍ୟ ଗୋଟିଏ ପୁତ୍ର ହେଲା । ତାର ନାମ ହେଲା ବିଦୁର । ସେ ବଡ଼ ମହତ୍ଲୋକ ଥିଲେ । ଧୃତରାଷ୍ଟ୍ରଙ୍କର ପୁତ୍ରମାନେ ହେଲେ କୌରବ ଓ ପାଣ୍ଡୁଙ୍କର ସନ୍ତାନ ହେଲେ ପାଣ୍ଡବ । ବ୍ୟାସଦେବ ନ ଥିଲେ କୌରବ, ପାଣ୍ଡବ, ମହାଭାରତ ଯୁଦ୍ଧ, ଓ ମହାଭାରତ, ଗୀତା, ଭାଗବତ ନ ଥାନ୍ତା ।

ପାଣ୍ଡୁ ଯେତେବେଳେ ମଲେ ସତ୍ୟବତୀ ପୁଣି ବ୍ୟାସଦେବଙ୍କୁ ମନେ ପକାଇଲେ । ବ୍ୟାସଦେବ ଆସି ଦେଖିଲେ, ମା'ଙ୍କର ଦୁରବସ୍ଥା, ଦୁଃଖ, ହତାଶାଭାବ । ମାଙ୍କୁ ବଣକୁ ନେଲେ ଶାନ୍ତି ଓ ତପସ୍ୟା ପାଇଁ । ନିଜ ହାତରେ, ପାହାଡ଼ର ପାଦଦେଶରେ କୁଟୀରଟିଏ ନିର୍ମାଣ କଲେ ବ୍ୟାସଦେବ । ବଣରେ ଫଳମୂଳ ଓ ଝରଣାର ପାଣି ପିଇ ସତ୍ୟବତୀ, ଅମ୍ବିକା, ଅମ୍ବାଳିକା ଦିନକାଟିଲେ ବଣରେ । ସେମାନଙ୍କର ଶେଷ ଜୀବନ ପ୍ରାର୍ଥନାମୟ ଥିଲା ।

ଯେତେବେଳେ ଧୃତରାଷ୍ଟ୍ର ଓ ତାଙ୍କ ପୁତ୍ର କୌରବମାନେ ପାଣ୍ଡବମାନଙ୍କ ପ୍ରତି ଖରାପ ବ୍ୟବହାର କଲେ, ସେତେବେଳେ ବ୍ୟାସଦେବ ଗୁରୁଗମ୍ଭୀର ସ୍ୱରରେ କହିଥିଲେ, ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟର ଅଂଶ ଦେଇ ଦେବାପାଇଁ । ସେତେବେଳେ ତାଙ୍କ କଥା କେହି ଶୁଣିଲେ ନାହିଁ । ବିଫଳ ମନରେ କୌରବମାନଙ୍କର ନିଶ୍ଚୟ ଅନିଷ୍ଟ ହେବ କହି ବଣକୁ ଫେରିଗଲେ । ବୁଲି ବୁଲି ପାଣ୍ଡବମାନଙ୍କୁ ଯାଇ ପାଇଲେ । ସେମାନଙ୍କ ଆତିଥ୍ୟ ଗ୍ରହଣ କଲେ । ଦ୍ରୌପଦୀ କାନ୍ଦିବାରୁ ତାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ଧର୍ମର ଜୟ ସଦା ହୁଏ ; ଅଧର୍ମର ପରାଜୟ ହୁଏ ।

ବ୍ୟାସଦେବ ଯୁଦ୍ଧଭୂମିକୁ ଯାଉଥିଲେ । ପାଣ୍ଡବମାନଙ୍କର ଶୁଭ କାମନା କରୁଥିଲେ । ଯୁଧିଷ୍ଠିର ଥରେ ଦୁର୍ଯ୍ୟୋଧନଙ୍କୁ ମାରିବା ଉପରେ ଥିଲେ । ସେ ମନେ ପକାଇଦେଲେ ଯେ ଦୁର୍ଯ୍ୟୋଧନଙ୍କୁ ମାରିବା ଭୀମଙ୍କ କାମ ।

Digitized by srujanika@gmail.com

ନିଜର ସମସ୍ତ ପୁତ୍ରଙ୍କ ମରଣରେ ଧୃତରାଷ୍ଟ୍ର ଭାଙ୍ଗି ପଡ଼ିବାରୁ ବ୍ୟାସଦେବ କହିଲେ, ପାଣ୍ଡବମାନଙ୍କୁ ନିଜର ପୁତ୍ରପରି ମଣନ୍ତୁ । ଯୁଧିଷ୍ଠିର ଗାନ୍ଧାରୀଙ୍କୁ ଦେଖାକଲାବେଳେ ସେ ତାଙ୍କୁ ଅଭିଶାପ ଦେବାକୁ ଯିବାବେଳେ ବ୍ୟାସଦେବ କହି ଉଠିଲେ ଯେ ପାଣ୍ଡବମାନଙ୍କର କିଛି ଦୋଷ ନାହିଁ । ସେମାନେ ଧର୍ମର ପଥ ଛାଡ଼ିନାହାନ୍ତି । ପାଣ୍ଡବମାନଙ୍କୁ ନିଜ ପୁତ୍ରପରି ଭାବି ଦିନ କାଟିବା ଉଚିତ ।

ଯୁଦ୍ଧରେ ରକ୍ତପାତ, ବଂଶନାଶ ଦେଖି ଯୁଧିଷ୍ଠିର ଦାରୁଣ ଦୁଃଖ ଅନୁଭବ କରିଥିଲେ । ସେ ରାଜଗାଦି ଛାଡ଼ି ସନ୍ନ୍ୟାସୀ ହେବାପାଇଁ ମନସ୍ଥ କଲେ । ବ୍ୟାସ ଏକଥା ଶୁଣି କହିଲେ, "ତୁମେ ଏତେ ବୋକା, ତୁମେ ଚାହୁଁଛ ବନକୁ ଯିବାକୁ । ଧର୍ମ ପାଇଁ, ନ୍ୟାୟ ପାଇଁ ଯୁଦ୍ଧରେ ଶତ୍ରୁକୁ ନଷ୍ଟକଲ । ରାଜ୍ୟ ପାଇଲା ପରେ ବଣକୁ ଯିବ ତପ ପାଇଁ ? ତୁମେ କ୍ଷତ୍ରିୟ । ତୁମ୍ଭେ ତୁମ୍ଭର କର୍ତ୍ତବ୍ୟ ଜାଣିବା ଉଚିତ । ଭୀରୁ ପରି ବ୍ୟବହାର କରନା । ତୁମେ କଣ ଶଙ୍ଖ ଓ ଲିଖିତଙ୍କ କଥା ଜାଣନା ? ଶୁଣ—ଅନେକଦିନ ତଳେ ଶଙ୍ଖ ଓ ଲିଖିତ ବୋଲି ଦୁଇଋଷି ଥିଲେ । ସେମାନେ ବିଦ୍ୱାନ ଥିଲେ । ଧର୍ମର ଗୁଢ଼ ରହସ୍ୟ ମଧ୍ୟ ଜାଣିଥିଲେ । ଦିନେ ଶଙ୍ଖଙ୍କ ଅନୁପସ୍ଥିତିରେ ଲିଖିତ ଶଙ୍ଖଙ୍କର ଆଶ୍ରମରୁ ଫଳ ଖାଇଗଲେ । ଶଙ୍ଖ ଏହା ଜାଣି ଲିଖିତଙ୍କୁ ନିଜର ଅପରାଧ ପାଇଁ ରାଜାଙ୍କ ନିକଟକୁ ପଠାଇଲେ ତାର ପ୍ରାୟଶ୍ଚିତ୍ତ ପାଇଁ । ରାଜା ଲିଖିତଙ୍କ ଦୁଇ ହାତ କାଟି ଦେଲେ । ରାଜାଙ୍କର ଲିଖିତଙ୍କ ପ୍ରତି କିଛି ବ୍ୟକ୍ତିଗତ ଘୃଣା ନ ଥିଲା । ସେ ଫେରିଆସି ଭାଇ ଶଙ୍ଖଙ୍କୁ ତାଙ୍କ ଅଙ୍ଗହୀନ ଅବସ୍ଥା ଦେଖାଇଲେ । ସେ ନଦୀରେ ସ୍ନାନ କରିବାକୁ କହିଲେ । ସ୍ନାନ କଲାପରେ ହାତ ଫେରି ଆସିଲା । ବ୍ୟାସଦେବ କହିଲେ ଯେ, ରାଜା ଋଷିଙ୍କୁ ଦୋଷପାଇଁ ଦଣ୍ଡ ଦେଲେ । ମାତ୍ର ତାଙ୍କର କିଛି ବ୍ୟକ୍ତିଗତ ଘୃଣା ନ ଥିଲା । ରାଜା ତାଙ୍କର କର୍ତ୍ତବ୍ୟ କେବଳ କଲେ । କୌରବମାନେ ଦୁଷ୍ଟ ଥିଲେ; ତେଣୁ ସେମାନେ ଦଣ୍ଡ ପାଇଲେ । ରାଜକାର୍ଯ୍ୟ କରିସାରିଲା ପରେ ତୁମ୍ଭେ ବଣକୁ ଯାଇପାର । ଦୁଷ୍ଟକୁ ଦଣ୍ଡଦେବା ଧର୍ମ । ଯଦି କେହି ପରିବାର କିମ୍ବା ସମାଜର ଅପଯଶ ଆଣେ ତାକୁ ମାରିଦେଲେ ପାପ ନାହିଁ । ଯଦି କୌଣସି ପରିବାର କିମ୍ବା ସମାଜ, ଜାତି ପ୍ରତି ଲଜ୍ଜା ଆଣେ, ସେ ବଂଶର ସର୍ବନାଶ କରିବା ହିଁ ଧର୍ମ ।

Digitized by srujanika@gmail.com

୧୬ ବର୍ଷର କିଶୋର ଅଭିମନ୍ୟୁଙ୍କୁ ସମସ୍ତେ ମିଶି ଅନ୍ୟାୟ ଯୁଦ୍ଧରେ ମାରିଲେ । ଅର୍ଜୁନଙ୍କର ସ୍ତ୍ରୀ ସୁଭଦ୍ରା, ଅଭିମନ୍ୟୁର ବିଧବା ସ୍ତ୍ରୀ ଉତ୍ତରା ବେଦ-ବ୍ୟାସଙ୍କର ପଦସ୍ପର୍ଶ କରିବାରୁ ସେ ଜଣେ ବିଖ୍ୟାତ ସମ୍ରାଟଙ୍କର ମାତା ହେବେ କହି ଆଶୀର୍ବାଦ କଲେ । ଯୁଧିଷ୍ଠିର ମଧ୍ୟ ସନ୍ତୋଷ ଶାନ୍ତି ଲାଭ କଲେ, ମହର୍ଷି ବ୍ୟାସଦେବଙ୍କ କଥାରେ ।

ଅନେକ ଦିନପରେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀ ବନକୁ ଯିବାକୁ ଚାହିଁଲେ । ବ୍ୟାସଦେବ ସେମାନଙ୍କୁ ବନକୁ ନେଲେ । ସେମାନେ ଯୁଦ୍ଧରେ ମୃତ ବ୍ୟକ୍ତିମାନଙ୍କୁ ଦେଖିବାକୁ ଚାହିଁଲେ । ବ୍ୟାସଦେବ ନିଜର ତପବଳରେ ସେମାନଙ୍କୁ ଡାକିଲେ ଗଙ୍ଗା କୂଳରେ । ସେମାନଙ୍କୁ ଦେଖି ଏମାନେ ଖୁସି ହେଲେ ।

୩୬ ବର୍ଷ ପରେ, ଭଗବାନ ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ମହାଯୋଗ ପରେ ମହାଯାତ୍ରା ହେଲା—ଦୁଃଖିତ ହେଲେ ଅର୍ଜୁନ । ବ୍ୟାସଦେବ ଅର୍ଜୁନଙ୍କୁ କହିଲେ, ଦୁଃଖର କାରଣ କିଛି ନାହିଁ । କାରଣ କର୍ତ୍ତବ୍ୟ କରିଛ ଯଶ ଅର୍ଜିଛ । ଦ୍ୱାପର ଯୁଗର ଶେଷ । ଅର୍ଜୁନଙ୍କୁ, ସ୍ୱର୍ଗକୁ ଯାଇ ଯୁଧିଷ୍ଠିରଙ୍କୁ ଏ ବାର୍ତ୍ତା ଦେବାପାଇଁ ପଠାଇଲେ ।

ଦ୍ୱାପର ଯୁଗର ସମସ୍ତ ଘଟଣା ବ୍ୟାସଦେବ ଆଖିରେ ଦେଖିଛନ୍ତି । ପରିବାର ମଧ୍ୟରେ ଥିଲେ ସେ ବୃଦ୍ଧ । ସେ ସାଧୁତା ଓ ଧର୍ମର ପଥ ଦେଖାଇଛନ୍ତି । ଯେ ଭୁଲ୍ କରିଛି, ତାକୁ ଭର୍ତ୍ସନା କରିଛନ୍ତି ଓ ତାହା ଠିକ୍ କରି ଦେଇଛନ୍ତି । ଯେ ସାଧୁ, ସନ୍ଥ, ଉତ୍ତମ ସେ ତାଙ୍କୁ ସମ୍ମାନ କରିଛନ୍ତି । ଦୁଷ୍ଟଲୋକ ତାଙ୍କୁ ଭୟ କରିଛନ୍ତି । ସେ ଅନେକ ରଜା ଓ ରାଜ୍ୟର ଉତ୍ଥାନ ଦେଖିଛନ୍ତି । ସେତେବେଳେ ଋଷିମାନେ ତପବଳରେ, ଯୋଗବଳରେ ଶତ ଶତ ବର୍ଷ ବଞ୍ଚୁଥିଲେ । ସେମାନେ ଚାହିଁଲେ ଜରା, ମୃତ୍ୟୁକୁ ଜୟ କରୁଥିଲେ । କେହି କେହି ବିଶ୍ୱାସ କରନ୍ତି ଯେ, ବଦ୍ରୀରେ ଜୀବିତ ଅଛନ୍ତି । ବ୍ୟାସଦେବ ଜଗତକୁ ନିଜ ପ୍ରଣୀତ ଧର୍ମଗ୍ରନ୍ଥମାନ ଦେଇଯାଇଛନ୍ତି । ଏହାହିଁ ଅମର ଜାତୀୟ ଗ୍ରନ୍ଥ ।

ମହାଭାରତ ଯୁଦ୍ଧ ସରିବାର କିଛିବର୍ଷ ପରେ ଦିନେ ବ୍ରହ୍ମା ବଦରୀ ବଦରିକାଶ୍ରମକୁ ଆସି ମହାଭାରତର ଗଳ୍ପ ଲେଖିବାକୁ କହିଲେ । ଗଣେଶ

Digitized by srujanika@gmail.com

ଲେଖିବାରେ ତାଙ୍କ ସାହାଯ୍ୟ କରିଥିବେ ବୋଲି କହନ୍ତି । ହଜାର ହଜାର ବୀରଙ୍କର ଚରିତ୍ର ଚିତ୍ରଣ, ଅନେକ ଉପାଖ୍ୟାନ ଏ ମହାଭାରତରେ ପୂର୍ଣ୍ଣ । ଏ ଦେଶର ଏ ଜାତିର ଏହା ମହାନ୍ ଇତିହାସ । ଏହାର ନାୟକ ନାୟିକା ଏ ଜାତିର ଆଦର୍ଶ ପୁରୁଷ, ପୁଣ୍ୟଶ୍ଳୋକ, ଅନୁକରଣୀୟ ।

ବୈଶମ୍ପାୟନ ବ୍ୟାସଦେବଙ୍କର ଶିଷ୍ୟ ଥିଲେ । ସେ ତାଙ୍କ ଗୁରୁଙ୍କର ସେବା କରୁଥିଲେ । ଯେତେବେଳେ ବ୍ୟାସଦେବ ଗଣେଶଙ୍କୁ ଡାକୁଥିଲେ, ସେହି ଅନୁବାଚନକୁ ବୈଶମ୍ପାୟନ ଶୁଣୁଥିଲେ । ସେ ସବୁ ଥିଲା ବଡ଼ ଚିତ୍ତାକର୍ଷକ । ସେ ଅନୁଭବ କଲେ ଯେ ସମସ୍ତ ମାନବ ଜାତି ଏହା ଶୁଣିବା ଉଚିତ ।

ରାଜା ଜନମେଜୟ ହସ୍ତିନାବତୀରେ ରାଜତ୍ୱ କରୁଥିଲେ । ସେ ଅର୍ଜୁନଙ୍କର ଅନ୍ତିନାତି । ସେ ଯେତେବେଳେ ଶୁଣିଲେ ବ୍ୟାସଦେବ ମହାଭାରତ ଯୁଦ୍ଧ ଦେଖିଛନ୍ତି, ତାଙ୍କଠାରୁ ତାଙ୍କ ଶକ୍ତିଶାଳୀ ପୂର୍ବପୁରୁଷମାନଙ୍କର କଥା ଶୁଣିବାକୁ ଉତ୍କଣ୍ଠା ପ୍ରକାଶ କଲେ । ବ୍ୟାସଦେବଙ୍କଠାରୁ କେବଳ ମହାଭାରତ କଥା ଶୁଣିବାପାଇଁ ତାଙ୍କୁ ରାଜଧାନୀକୁ ଆଣିବାର ଉପାୟ ପାଞ୍ଚିଲେ । ଗୋଟିଏ ଯଜ୍ଞ କଲେ । କୌଣସି ଋଷି, ମହର୍ଷି ଯଜ୍ଞରେ ଯୋଗ ଦେବାକୁ ମନାକରନ୍ତି ନାହିଁ । ବ୍ୟାସଦେବଙ୍କୁ ନିମନ୍ତ୍ରଣ କରିବା ପାଇଁ ଜନମେଜୟ ତାଙ୍କର କୁଳ-ପୁରୋହିତଙ୍କୁ ପଠାଇଲେ । ଶହ ଶହ ମୁନିଋଷି ଆସିଲେ । ଏକ ପବିତ୍ର ସାଧୁ ମେଳା ହେଲା । ଉତ୍ସବ ସରିଗଲା ପରେ ରାଜା ବ୍ୟାସଦେବଙ୍କୁ ଆଉ କିଛିଦିନ ରହିବା ପାଇଁ ଅନୁରୋଧ କଲେ । ଜନମେଜୟ ଦିନେ ଅନୁରୋଧ କଲେ— "ପ୍ରଭୁ, ଆପଣ ମୋର ପୂର୍ବପୁରୁଷଙ୍କୁ ଜାଣନ୍ତି । ଆପଣ ଅନୁଗ୍ରହ କରି ମହାଭାରତ କଥା ମୋତେ କୁହନ୍ତୁ ।" ସେ ବୈଶମ୍ପାୟନଙ୍କୁ ବର୍ଣ୍ଣନା କରିବାକୁ କହିଲେ । ଶ୍ରୋତାମାନଙ୍କ ମଧ୍ୟରେ ଆଉ ଜଣେ ଋଷି ଥିଲେ । ତାଙ୍କ ନାମ ଉଗ୍ରଶ୍ରବା । କିଛିଦିନ ପରେ ନୈମିଷାରଣ୍ୟରେ ଗୋଟିଏ ଯଜ୍ଞ ହେଲା । ଋଷିମେଳାରେ ଉଗ୍ରଶ୍ରବା ଏହି ମହାକାବ୍ୟ ମହାଭାରତ କଥା କହିଲେ । ଜଣଙ୍କଠାରୁ ଅନ୍ୟ ଜଣଙ୍କ ନିକଟ—ଏହିପରି ଅନେକ ସ୍ଥାନରେ ଏକଥା ପ୍ରଚାର ହେଲା । ଏଥିରେ ପ୍ରକାଶ ପାଇଛି ବ୍ୟାସଦେବଙ୍କ ବୁଦ୍ଧିମତ୍ତା ।

Digitized by srujanika@gmail.com

ବ୍ୟାସଦେବ ବେଦକୁ ଚାରିଭାଗରେ ବିଭକ୍ତ କରିଥିଲେ । ଋକ୍, ଯଜୁ, ସାମ, ଅଥର୍ବ । ବ୍ୟାସଦେବଙ୍କର ଶହ ଶହ ଶିଷ୍ୟ ଥିଲେ । ସେଥିମଧ୍ୟରେ ବୈଶମ୍ପାୟନ, ପାଇଲ, ଜୈମିନୀ, ସୁମନ୍ତୁ ପ୍ରଧାନ । ସେମାନେ ବେଦକୁ ଲୋକଚକ୍ଷୁକୁ ବିଭିନ୍ନ ସ୍ଥାନରେ ଆଣିଲେ । ବେଦ ବୁଝିବାକୁ କଷ୍ଟକର । ସେଥିପାଇଁ ବ୍ୟାସଦେବ ବେଦକୁ ବୁଝାଇବା ପାଇଁ ବ୍ରହ୍ମସୂତ୍ର ଲେଖିଲେ । ବ୍ରହ୍ମସୂତ୍ରକୁ ବୁଝାଇବାକୁ ଯାଇ ଅଠରପୁରାଣ ଲେଖିଲେ । ସେଥିରେ ମହାନ୍ତ ଲୋକଙ୍କର କଥା ଓ ନୀତି ନିୟମ ଲେଖିଲେ । ଶେଷରେ ହରିବଂଶ ଲେଖିଲେ । ସେଥିରେ ଭଗବାନ ଶ୍ରୀକୃଷ୍ଣଙ୍କର କଥାମୃତ ଅଛି । ମହାଭାରତ ଠିକେ ଆଗର ଲେଖା । ଏହା ଜ୍ଞାନର ସମୁଦ୍ର । ଏହା ପଞ୍ଚମ ବେଦ । ବିଶ୍ୱର ଦର୍ଶନ ଜ୍ଞାନର ଭଣ୍ଡାର ଶ୍ରୀମଦ୍ ଭଗବଦ୍ ଗୀତା । ମହାଭାରତର ଗୋଟିଏ ଗୋଟିଏ ଅଂଶ । ××× ଶ୍ରୀମଦ୍ ଭାଗବତରେ ବ୍ୟାସଦେବ ଭଗବାନ ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ ବର୍ଣ୍ଣନା କରିଛନ୍ତି । ସେ ସତ୍, ଚିତ୍, ଆନନ୍ଦ, ସେ ସୃଷ୍ଟି, ସ୍ଥିତି, ପ୍ରଳୟର କର୍ତ୍ତା, ସେ ହିଁ ତାହାର ବିନାଶକାରୀ ।

ବ୍ୟାସଦେବ ନିଜପୁତ୍ର ଶୁକଦେବ ବାଲ୍ୟ ଅବସ୍ଥାରେ ସନ୍ନ୍ୟାସ ଅବଲମ୍ବନ କରି ଚାଲିଯିବାରୁ ଦୁଃଖରେ ତାଙ୍କୁ ଡାକିଲେ, ମାତ୍ର ଉତ୍ତର ପାଇଲେ ବୃକ୍ଷ-ଲତାଙ୍କଠାରୁ; କାରଣ ଶୁକଙ୍କର ବିଶ୍ୱାତ୍ମଭାବ, ସର୍ବଭୂତହୃଦୟସ୍ଥ ମନୁଷ୍ୟ, ଗଛପଥର, ନଦନଦୀ, ସ୍ଥାବର ଜଙ୍ଗମ ସମସ୍ତଙ୍କୁ ଆଧ୍ୟାତ୍ମଭାବରେ ଭାବାନ୍ୱିତ କରିଥିଲା ।

ନୈମିଷାରଣ୍ୟରେ ମହାମତି ସୂତଙ୍କୁ ପ୍ରଣାମ ଜଣାଇ ଶୌନକ କହିଲେ ଯେ ଆଧ୍ୟାତ୍ମିକତା ଦ୍ୱାରା, ମାୟା ଶୂନ୍ୟ ହୋଇ ବିଷ୍ଣୁଭକ୍ତ ଭକ୍ତିଦ୍ୱାରା କିପରି ଅନ୍ତର୍ଯ୍ୟାମୀଙ୍କ ଦର୍ଶନ ପାଇବ ତାର ଉପାୟ ବ୍ୟାସଦେବ କହିଛନ୍ତି । କଳିଯୁଗରେ ଲୋକେ ସାଧାରଣତଃ ପାଷାଣ୍ଡ । ସ୍ୱଭାବ ସେମାନଙ୍କର ପୈଶାଚିକ । ଏହି ଅହଙ୍କାର, ଘୃଣା, ମୃତ୍ୟୁର ଭୟ କିପରି ଯିବ, ଭଗବାନ କିପରି ମିଳିବେ, ଏହାର ପଥ ସେ ଶ୍ରୀମଦ୍ ଭାଗବତରେ ଲେଖିଛନ୍ତି । ସୂତ କହିଲେ ଯେ, ପ୍ରତ୍ୟେକ ହୃଦୟରେ ପ୍ରେମ ଅଛି । ଏହି ପ୍ରେମ-ଭକ୍ତିକୁ ଊର୍ଦ୍ଧ୍ୱମୁଖୀ କଲେ ଭଗବାନ ମିଳିବେ । ଏହି କଥା ପବିତ୍ରଗ୍ରନ୍ଥ ଶ୍ରୀମଦ୍ ଭାଗବତରେ ଶୁକଦେବ

Digitized by srujanika@gmail.com

ସ୍ପଷ୍ଟରୂପେ ବାଖ୍ୟା କରିଛନ୍ତି । ଭାଗବତ ଶୁଣିବା ପାଇଁ ମଧ୍ୟ ପୂର୍ବଜନ୍ମର ସୁକୃତ ଥିବା ଉଚିତ । ସମସ୍ତଙ୍କ ମନ ବଳେନା । ଶୁକଦେବ ପରୀକ୍ଷିତ ମହାରାଜାଙ୍କୁ ଶ୍ରୀମଦ୍ ଭାଗବତ ଶୁଣାଇଲବେଳେ, ଏହା ତାଙ୍କୁ ଅମୃତପରି ଲାଗିଲା । ଏହି ଧର୍ମଗ୍ରନ୍ଥ ଦେବତାମାନଙ୍କପାଇଁ ମଧ୍ୟ ଦୁର୍ଲ୍ଲଭ । ଏହାର ଏକ ସପ୍ତାହ ବ୍ୟାପି ସମ୍ଭାଷଣ ମୋକ୍ଷ ଦାନକରେ । ଯେତେବେଳେ ଗୃହଜଣ ଋଷି ଦୁଃଖିତ ହୋଇ ସତ୍‌ସଙ୍ଗପାଇଁ ବଦରିକାଶ୍ରମ ଆସିଥିଲେ—ନାରଦ ସେମାନଙ୍କୁ କହିଲେ ଯେ, ପୁଷ୍କର, ପ୍ରୟାଗ. କାଶୀ, ଗୋଦାବରୀ (ନାସିକ), ହରଦ୍ୱାର, କୁରୁକ୍ଷେତ୍ର ଓ ସେତୁବନ୍ଧ ଇତ୍ୟାଦି ତୀର୍ଥଯାତ୍ରା ଆନନ୍ଦ ଦେଇପାରିଲା ନାହିଁ । ମନର ପବିତ୍ରତା, ଶରୀରର ଶୁଦ୍ଧତା, ସତ୍ୟ, ଦୟା ଆଉ କଳିଯୁଗରେ ଲୋକମାନଙ୍କଠାରେ ନାହିଁ । ଲୋକେ ସ୍ୱାର୍ଥାନ୍ଧ, ନିଜର ଉଦର ପୂରଣରେ ବ୍ୟସ୍ତ । ସେମାନେ ବୁଦ୍ଧିହୀନ, ଭାଗ୍ୟହୀନ । ଯେ ସିଦ୍ଧପୁରୁଷ ମହାପୁରୁଷ ବୋଲି ବୋଲାଉଛନ୍ତି, ସେମାନେ ଭୁଲ ଶାସ୍ତ୍ରନୀତି ବୁଝାଉଛନ୍ତି । ଯେଉଁମାନେ ସଂସାର ତ୍ୟାଗ କରିଛନ୍ତି ସେମାନଙ୍କ ନିକଟରେ ଅତୁଳ ସମ୍ପତ୍ତି । ସ୍ତ୍ରୀମାନେ ଘରେ ରାଜତ୍ୱ କରୁଛନ୍ତି । ଲୋଭରେ ଲୋକେ ଝିଅ ବିକ୍ରି କରନ୍ତି । ସ୍ୱାମୀ, ସ୍ତ୍ରୀ ମଧ୍ୟରେ କଳହ । ସତ୍‌କର୍ମ ନାହିଁ, ମନ୍ଦିର ସବୁ ଦୁଷ୍ଟ ଲୋକଙ୍କଦ୍ୱାରା ଚାଳିତ, ଖାଦ୍ୟଶସ୍ୟ ବିକ୍ରି, ବ୍ରାହ୍ମଣର ବେଦବିକ୍ରି, ସ୍ତ୍ରୀଲୋକମାନଙ୍କର ବେଶ୍ୟାବୃତ୍ତି କଳିଯୁଗରେ ବଢ଼ିଆଡ଼େ । ମନୁଷ୍ୟର ଭକ୍ତି ଥାଇ, ଜ୍ଞାନ ଥାଇ, ବୈରାଗ୍ୟ ଥାଇ ମଧ୍ୟ ଶାନ୍ତି ନାହିଁ, ସୁଖ ନାହିଁ ୀ କଳିର ପ୍ରଭାବରେ ସଦାଚାର ନାହିଁ, ଯୋଗ ନାହିଁ; ଅଛି ଶଠତା, ଦୁଷ୍କର୍ମ, ରାକ୍ଷସ ବୃତ୍ତି । ସତ୍‌ଲୋକ ବିପନ୍ନ ରହେ । ଅସତ୍ ଲୋକ ଆନନ୍ଦରେ ଦିନ କାଟେ । ବୁଦ୍ଧିମାନ ଓ ଜ୍ଞାନୀ ଲୋକ ବିଚକ୍ଷଣତା ସହିତ ଏ କଳିଯୁଗରେ ଅଟଳ ଓ ଦୃଢ଼ ରହେ । ଭଗବାନଙ୍କ ପ୍ରତି ଭକ୍ତି ହିଁ ଜୀବନରେ ନୂତନତା ଦିଏ । ବୃଦ୍ଧକୁ ଯୁବକ କରେ ।

ମୁକ୍ତିଦାତା ଭଗବାନ ଶ୍ରୀକୃଷ୍ଣ ସଂସାରରୁ ବିଦାୟନଠାରୁ କଳିଯୁଗର ଆରମ୍ଭ, ଆଧ୍ୟାତ୍ମିକତାର ବିପର୍ଯ୍ୟୟ ହେଲା, କୁକର୍ମ ବ୍ୟାପିଲା ଚାରିଆଡ଼େ, ଭଗବାନଙ୍କ କଥା କହି କହି ଭିକ୍ଷା କରିବେ ବ୍ରାହ୍ମଣମାନେ ପ୍ରତି ଘରେ ଘରେ । ନିଷ୍ଠୁର କାର୍ଯ୍ୟ କରି ଅବିଶ୍ୱାସୀ ଲୋକ ତୀର୍ଥସ୍ଥାନରେ ବସବାସ କରିବେ । ତେଣୁ ପବିତ୍ରସ୍ଥାନ ଆଉ ରହିବନାହିଁ । କାମାତୁର, କ୍ରୋଧୀ ନିଜର ସୁଖପାଇଁ ସନ୍ୟାସ

Digitized by srujanika@gmail.com

ଜୀବନ କଟାଇବେ । ପ୍ରାର୍ଥନାପୂର୍ଣ୍ଣ ଜୀବନ ଶ୍ରେଷ୍ଠ ହେବ । ମନର ସଂଯମ ଅଭାବରୁ, ଲୋଭରୁ, ଭ୍ରାନ୍ତିରୁ ସ୍ୱଧର୍ମ ତ୍ୟାଗୀ ଧର୍ମଗ୍ରନ୍ଥ ଅଧ୍ୟୟନ ନ କରିବାରୁ ଧ୍ୟାନଯୋଗ ଲୁପ୍ତହେବ । ପଣ୍ଡିତମାନେ ସ୍ୱେଚ୍ଛ ହୋଇ ପିଲା ଜନ୍ମ ଦେବାରେ ବ୍ୟସ୍ତରହି ମୁକ୍ତିଲାଭ କଥା ଭୁଲିବେ । ଏ ଯୁଗରେ ତପ, ଜପ, ଯୋଗ, ଯାଗ ଅପେକ୍ଷା ଭଗବାନ ଶ୍ରୀକୃଷ୍ଣଙ୍କର ନାମ କୀର୍ତ୍ତନ ମୋକ୍ଷ ଦାନ କରିବ । ଯାହା ପାଇଥିଲେ ପ୍ରହ୍ଲାଦ ଧ୍ରୁବ । ଏହି ଭକ୍ତିଧର୍ମ ହିଁ ଯୁଗଧର୍ମ, ଏହା ଭଗବାନଙ୍କର ଅତି ପ୍ରିୟ । ସତ୍ୟ, ତ୍ରେତା, ଦ୍ୱାପରଯୁଗ ବୈରାଗ୍ୟରେ ଓ ଆଧ୍ୟାତ୍ମିକ ଜ୍ଞାନ ଥିଲା ମୋକ୍ଷର ମାର୍ଗ । କଳିରେ କେବଳ ଭକ୍ତି ହିଁ ମୁକ୍ତିର ପଥ, ଭଗବାନଙ୍କୁ ଲାଭକରିବାର ମାର୍ଗ । ଏହାହିଁ କଳିଯୁଗର ଅଧର୍ମୀ ଲୋକଙ୍କ ପାଇଁ ପଥ । ଯାହାର ମନରେ ସଦାବେଳେ ଭଗବାନଙ୍କ ପ୍ରତି ପ୍ରେମ-ଭକ୍ତି ଥାଏ ସେ ସ୍ୱପ୍ନରେ ମଧ୍ୟ ଯମରାଜାଙ୍କୁ ଦେଖିପାରେନା । ଏପରି ଆତ୍ମାଙ୍କୁ ଭୂତ, ପ୍ରେତ, ରାକ୍ଷସ କେହି ହେଲେ ଛୁଇଁପାରିବେ ନାହିଁ । ଭଗବାନ ପ୍ରାପ୍ତ ହୁଅନ୍ତି ନାହିଁ—ବୈରାଗ୍ୟ, ବେଦ ଅଧ୍ୟୟନ, ଆଧ୍ୟାତ୍ମିକ ସାଧନା କିମ୍ବା ସତକର୍ମ ଦ୍ୱାରା । ଭଗବାନ ପ୍ରାପ୍ତ ହୁଅନ୍ତି ଭକ୍ତିଦ୍ୱାରା । କଳିରେ ଭକ୍ତିଧର୍ମ ହିଁ ସାର । ଏହି ଭକ୍ତି ଦ୍ୱାରା ଭଗବାନ ଶ୍ରୀକୃଷ୍ଣ ନିଜ ଦୁଆରକୁ ଆସିଥାନ୍ତି । ସଂକଳ୍ପ ନୁହେଁ, ତୀର୍ଥଯାତ୍ରା ନୁହେଁ, ଆଧ୍ୟାତ୍ମିକ ସାଧନା ନୁହେଁ, ବେଦ, ଉପନିଷଦ, ଗୀତା ଅଧ୍ୟୟନ ନୁହେଁ, ଯାଗ ନୁହେଁ, ଜ୍ଞାନ ନୁହେଁ କେବଳ ଭଗବାନଙ୍କ ପ୍ରତି ଭକ୍ତିହିଁ ମୁକ୍ତିଦାତା । ନାରଦ ଏ ସ୍ୱର୍ଗବାଣୀ ଶୁଣିଥିଲେ । ଏହାହିଁ ଶୁଣିଥିଲେ ସନକାଦି ଋଷିମାନଙ୍କ ଠାରୁ । ଭକ୍ତି, ଜ୍ଞାନ ଓ ବୈରାଗ୍ୟ ମଧ୍ୟରୁ ଭକ୍ତି ଯୋଗ ହିଁ ଶ୍ରେଷ୍ଠ । ଶ୍ରୀମଦ୍ ଭାଗବତ ଅଧ୍ୟୟନ ଜ୍ଞାନଯୋଗ ବୋଲି ଶୁକ ଇତ୍ୟାଦିଙ୍କ ମତ । ଭଜନ, କୀର୍ତ୍ତନ ଆଣିବ ଭକ୍ତି ଜ୍ଞାନ ଓ ବୈରାଗ୍ୟ । ଜ୍ଞାନ ଓ ବୈରାଗ୍ୟର ବଳେ ପ ହେବ. ଆସିବ ଭକ୍ତି ଦ୍ୱାରା ଆନନ୍ଦ ପ୍ରେମ, କଳିଯୁଗର ଯେତେ ଦୁର୍ଦ୍ଦଶା ସବୁ ଉଭେଇଯିବ, ଶ୍ରୀମଦ୍ ଭାଗବତ ପଠନ, ଶ୍ରବଣ, ଆଚରଣ ଦ୍ୱାରା । ଭକ୍ତି ଉତ୍ପାଦନ କରିବା ପ୍ରେମ । ଜ୍ଞାନ, ବୈରାଗ୍ୟ ଆସିବ ତାର ପଛରେ । ନାଚି ଉଠିବ ପ୍ରତ୍ୟେକ ହୃଦୟ, ପ୍ରତ୍ୟେକ ଘର । ଶ୍ରୀମଦ୍ ଭାଗବତ ବେଦ, ଉପନିଷଦ ଗୀତାର ସାରାଂଶ ଉପରେ ଆଧାରିତ । ଭାଗବତ ଓ ବେଦ ସମତୁଲ୍ୟ ଅଟେ । ଭାଗବତ ଭକ୍ତି, ଜ୍ଞାନ ଓ ବୈରାଗ୍ୟକୁ

Digitized by srujanika@gmail.com

ଦ୍ରବୀଭୂତ କରେ । ଏହାହିଁ ବ୍ୟାସଦେବଙ୍କ ମତ । ଭକ୍ତି, ଜ୍ଞାନ ଓ ବୈରାଗ୍ୟ ଦୃଢ଼ତା ପାଇଁ ଶ୍ରୀମଦ୍ ଭାଗବତରେ ଜ୍ଞାନଯଜ୍ଞ ଦରକାର । ଯଜ୍ଞ ଉଦ୍ଦିଷ୍ଟ ଜ୍ଞାନର ପ୍ରସାର ପାଇଁ । ଏହାକୁ ବ୍ୟାଖ୍ୟା କରିଥିଲେ ଶୁକଦେବ ଏବଂ ସେ ଏହାର ଐଶ୍ୱର୍ଯ୍ୟ ବଢ଼ାଇ ଥିଲେ । ଶ୍ରୀମଦ୍ ଭାଗବତ ଗ୍ରନ୍ଥରୂପୀ ଶ୍ରୀହରି ହୃଦୟରେ ଆସ୍ତେ ଆସ୍ତେ ଅବସ୍ଥାନ କରନ୍ତି । ଏଥିରେ ୧୮୦୦୦ ଶ୍ଳୋକ ଅଛି ଏବଂ ଏହା ରାଜା ପରୀକ୍ଷିତ ଓ ଶୁକଙ୍କ ମଧ୍ୟରେ କଥୋପକଥନ ଚ୍ଛଳରେ କୁହାଯାଇଛି ।

## ଭାଗବତ-ଜ୍ଞାନ-ଯଜ୍ଞ ସକଳ ଦୁଃଖର ଅବସାନକାରୀ ଓ ସାର୍ବଜନୀନ

କେବଳ ଭାଗବତ ଶାସ୍ତ୍ର ମୋକ୍ଷ ପ୍ରଦାନ କରେ । ଯେଉଁ ଘରେ ଏହା ପ୍ରତିଦିନ ପଢ଼ାଯାଏ ତାହା ପବିତ୍ର ସ୍ଥାନରେ ପରିଣତ ହୁଏ । ଏହାର ପଠନର ପ୍ରତିଫଳ ରାଜସୂୟ ଅଶ୍ୱମେଧ ଯଜ୍ଞଠାରୁ ଖୁବ୍ ବେଶୀ । ସପ୍ତାହବ୍ୟାପୀ ପଠନ ଶ୍ରବଣ—ଏ ପବିତ୍ରକାର୍ଯ୍ୟ ଅନ୍ୟାନ୍ୟ ଯଜ୍ଞ ଓ ଉପବାସ ଠାରୁ ଉତ୍କୃଷ୍ଟ । ଦୁଃସ୍ଥ ହେଉ ବା ଦରିଦ୍ର ହେଉ ଯାହାଙ୍କ ହୃଦୟରେ ଶ୍ରୀହରି ଭକ୍ତି ଆସିଲା ସେଇ ହେବ କେବଳ ଭାଗ୍ୟବାନ । ଦୁଷ୍ଟ, ମୂର୍ଖ, ପଶୁପକ୍ଷୀ ସମସ୍ତଙ୍କ ଉପରେ ଏହାର ଗୁଣ ଅଛି । ଉଭେଇଯାଏ ସପ୍ତଜନ୍ମର ପାପ, ତାପ, ଅନୀତ, ରାଗ, ଅହଙ୍କାର, ହିଂସା, ଭଣ୍ଡାମୀ, ନିଷ୍ଠୁରତା — ଭାଗବତ ଜ୍ଞାନଯଜ୍ଞ ଦ୍ୱାରା । ନିର୍ଦ୍ଦୟ, କ୍ରୂର, ବ୍ୟଭିଚାରୀର ହୃଦୟ ମନ ପବିତ୍ର ହୁଏ, ଆଧ୍ୟାତ୍ମିକ ପ୍ରତିଲାଭ କରେ ପାପମୁକ୍ତ ହୋଇ ପୁଣ୍ୟବାନ ହୁଏ । ମୋକ୍ଷ ମିଳେ । ଭଗବାନଙ୍କ ପ୍ରତି ଭକ୍ତ ପ୍ରେମ ଜାଗ୍ରତ ହେଲେ ଭକ୍ତର ନିର୍ମଳ ହୃଦୟରେ ଭଗବାନ ନିଜେ ରହନ୍ତି । ଏହାହିଁ ଭାଗବତ ଧର୍ମ, ଯାହା ଶିଖାଏ ଭଗବାନଙ୍କୁ ଭଲ କରିବାକୁ । ମୃତ୍ୟୁରେ ପ୍ରକୃତ ବନ୍ଧୁ, ସତ୍ୟ ଓ ଅଭୟ ଏହା ଦିଏ । ସମସ୍ତ ଦେବଦେବୀ ତୁଳ ହୁଅନ୍ତି

Digitized by srujanika@gmail.com

ସେ ଯାଗାରେ । ଦୁଃଖ ଯନ୍ତ୍ରଣା, ଦାରିଦ୍ର୍ୟର କଷଣ, ମାସ୍ଟର ବାଣ୍ଡିକାର ଅବସାନ ହୁଏ ।

ପାପକାର୍ଯ୍ୟରେ ଲିପ୍ତ ଲୋକ, ଯାହାର ନୈତିକ ପତନ ହୋଇଛି, ଯେ ଦୁଷ୍କର୍ମରେ ଲିପ୍ତ ତାର ମଧ୍ୟ ମୋକ୍ଷ ହୁଏ । ସପ୍ତାହ ବ୍ୟାପୀ ଶ୍ରୀମଦ୍ ଭାଗବତ-ଜ୍ଞାନଯଜ୍ଞଦ୍ୱାରା ମୁକ୍ତି ମିଳେ । ଏହା ପୁରାଣମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଭାଦ୍ର, ଆଶ୍ୱିନ, କାର୍ତ୍ତିକ, ମାର୍ଗଶୀର, ଶ୍ରାବଣ ଖୁବ୍ ଶୁଭ ଏ ଯଜ୍ଞପାଇଁ । ଏହା ଏପରି ଯାଗାରେ ହେବା ଉଚିତ ଯେ, ଶୂଦ୍ର ଓ ଅନ୍ୟାନ୍ୟ ଇତର ଜାତିର ଲୋକ ଓ ସ୍ତ୍ରୀ ଲୋକମାନେ ଭଲଭାବରେ ଶୁଣିପାରିବେ । ଯେଉଁମାନେ ସଂସାର ଜଞ୍ଜାଳ ଛାଡ଼ିଛନ୍ତି, ତାଙ୍କ ନିକଟକୁ ପତ୍ର ଇତ୍ୟାଦିଦ୍ୱାରା ଖବର ଦିବା ଉଚିତ । ତୀର୍ଥସ୍ଥାନ, ବଣ କିମ୍ବା ନିଜର ବାସସ୍ଥାନରେ ହେବା ଉଚିତ । ମନ୍ତ୍ର ଉଚ୍ଚାରଣ ହେବା ଉଚିତ—"ଓଁ ନମୋ ଭଗବତେ ବାସୁଦେବାୟ" । ଶ୍ରଦ୍ଧାର ସହିତ, ଆଗ୍ରହର ସହିତ ଶୁଣିବା ଉଚିତ । ଦରିଦ୍ର, ରୁଗ୍‌ଣ, ହତଭାଗ୍ୟ, ସନ୍ତାନହୀନ ଲୋକ ଏହା ଶୁଣିବା ଉଚିତ ।

ଏସବୁ ଜ୍ଞାନର ଭଣ୍ଡାର । ବ୍ୟାସଦେବଙ୍କ ହୃଦୟର ସଂପତ୍ତି । ବ୍ୟାସଦେବ ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରେ ଶକ୍ତିମାନ । ସେ ନିଜପାଇଁ କିଛି ଚାହିଁ ନଥିଲେ । କ୍ରୋଧ, ସ୍ୱାର୍ଥ, ଘୃଣା ତାଙ୍କୁ ଜଣା ନଥିଲା । ସେ ସୂର୍ଯ୍ୟପରି ସମସ୍ତଙ୍କୁ ଆଲୋକ ଦେଉଥିଲେ । ସେ ଶାନ୍ତନୁଙ୍କଠାରୁ ଆରମ୍ଭକରି ଜନମେଜୟଙ୍କ ପର୍ଯ୍ୟନ୍ତ ସାତଟି ରାଜବଂଶର ଉତ୍‌ଥାନ ପତନ ଦେଖିଥିଲେ । ସେ ଭଗବାନ ଶ୍ରୀକୃଷ୍ଣ, ଭୀଷ୍ମ, ଯୁଧିଷ୍ଠିରଙ୍କ ପରି ବୀରମାନଙ୍କ ସହିତ ବସବାସ କରିଥିଲେ । ଦୁଃଖିଙ୍କୁ ସାନ୍ତ୍ୱନା ଦେଉଥିଲେ । ଭୁଲ କରିବା ଲୋକଙ୍କୁ ସାବଧାନ କରୁଥିଲେ । ସେ ସତ୍ ଓ ପବିତ୍ରକୁ ଉତ୍ସାହିତ କରୁଥିଲେ । ସେ ଅଗ୍ନି ପରି ସ୍ୱଚ୍ଛ ।

ଏ ପ୍ରାଚୀନ ମହାକାବ୍ୟ ଚରିତ୍ରରେ ଜ୍ଞାନ, ସଂଯମ ଓ ଆତ୍ମଶକ୍ତି । ଜ୍ଞାନ, ପ୍ରେମ, ଧର୍ମଭାବ, ଈର୍ଷା, ଦ୍ୱେଷ, କ୍ରୋଧର ଅଧୀନ ହୋଇ ଜୀବନଯାପନ କରିବା ଉଚିତ ନୁହେଁ । ଏହାହିଁ ଏହାର ଶିକ୍ଷାଦାନ । ବ୍ୟାସ ପୂର୍ଣ୍ଣିମା ବ୍ୟାସଙ୍କ ନାମରେ ନାମିତ । ଏହି ଗୁରୁପୂଜାଉତ୍ସବ ଭାରତର ସର୍ବତ୍ର ପାଳିତ ହୁଏ ।

Digitized by srujanika@gmail.com

ଭଗବାନଙ୍କୁ ପ୍ରେମ କରିବା, ଭକ୍ତି କରିବା ହିଁ ଭାଗବତଧର୍ମ ଅଟେ । ନିଷ୍କାମ ଭକ୍ତି ହିଁ ଆଣିଦିଏ ମୋକ୍ଷ, ଆଣିଦିଏ ଭଗବାନଙ୍କୁ । ନାରୀ ଶୂଦ୍ର, ପତିତ, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ବେଦ ଶୁଣିବାରୁ ବଞ୍ଚିତ । ସେଥିପାଇଁ ବ୍ୟାସଦେବ ନାରଦଙ୍କ ପରାମର୍ଶ ଅନୁସାରେ ଶ୍ରୀମଦ ଭାଗବତ ରଚନା କଲେ । ମହାଭାରତ ଯୁଦ୍ଧ ପରର କଥା । ମହାଭାରତ ପ୍ରମାଣ କରିଛି ଯେ, ଭଗବାନ ଶ୍ରୀକୃଷ୍ଣ ସର୍ବଶକ୍ତିମାନ୍; ସବୁ ସେ କରାଇଛନ୍ତି । ତାଙ୍କୁ ଭକ୍ତି କିଛି ହୋଇପାରେନା । କଳିଯୁଗରେ ଲୋକ ଅଳ୍ପାୟୁ, ଦରିଦ୍ର, ବୁଦ୍ଧିହୀନ, ମନ୍ଦଭାଗ୍ୟ, ମିଥ୍ୟାବାଦୀ ହେବାରୁ, ରୋଗ ଓ ବ୍ୟାଧିରେ ପଡ଼ିଥିବାରୁ, ଏହି ପାପ କାର୍ଯ୍ୟରେ ଭଣ୍ଡାମି, ନଷ୍ଟ ଚରିତ୍ରା ଲିପ୍ତ ହେବାରୁ ହତ୍ୟା, ମିଥ୍ୟା ଆଶ୍ରୟ ନେଉଥିବାରୁ ଏହି ପବିତ୍ର ଶାସ୍ତ୍ର ପଠନ, ଶ୍ରବଣ, ଆଲୋଚନା ଆଚରଣ କଲେ ମନୁଷ୍ୟକୁ ମିଳିବ ମୋକ୍ଷ । ଭଗବାନଙ୍କ ନାମ କୀର୍ତ୍ତନ ଉଦ୍ଧାର କରିବ ମନୁଷ୍ୟକୁ ଜନ୍ମ, ଜରା, ମୃତ୍ୟୁ କ୍ଳେଶରୁ । ଏ ଭାଗବତରେ ବର୍ଣ୍ଣିତ ଅଛି ପରମାତ୍ମାଙ୍କ ଜନ୍ମ, ଜଗତର ସର୍ବମଙ୍ଗଳ ପାଇଁ । ପ୍ରଚାର କରିଛି ଭଗବାନଙ୍କ ପାଇଁ ପ୍ରେମ । ଏହା ଆଧ୍ୟାତ୍ମିକତାର ବିକାଶ ଆଣିଛି, ଆଣିଛି ବିପ୍ଳବ । ସାଂସାରିକ ଲୋକଙ୍କ ପାଇଁ ମୁକ୍ତିପଥକୁ ଆଲୋକିତ କରିଛି । ଲୋକମାନଙ୍କ ହୃଦୟକୁ ପବିତ୍ର କରୁଛି । ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରଦ୍ଧାଭକ୍ତି, ନିଷ୍କାମ ଭକ୍ତି । ଏହାହିଁ ମନୁଷ୍ୟକୁ ପହଞ୍ଚେଇବ ଭଗବାନଙ୍କ ନିକଟ, ଦେବ ମୁକ୍ତି । ଏହି ପ୍ରେମଭକ୍ତି ମନୁଷ୍ୟକୁ କରେ ମାୟାଶୂନ୍ୟ । ଧନ ଅର୍ଜନ କରାଇ, ଧନକୁ ଧର୍ମପାଇଁ ଖର୍ଚ୍ଚ କରାଇ ନେଇଯାଏ ଭଗବାନଙ୍କ ନିକଟ । ଶରୀର ଓ ଆତ୍ମାକୁ ଠିକ୍ ରଖିବାକୁ ସତ୍ୟ ହିଁ ଦରକାର । ବ୍ରହ୍ମ ସତ୍ୟ; ସତ୍ୟ ହିଁ ପରମାତ୍ମା, ଭଗବାନ । ଭଗବାନ ବାସୁଦେବ (ଶ୍ରୀକୃଷ୍ଣ)ଙ୍କ ଭକ୍ତି ସମ୍ପର୍କ ଜାଗ୍ରତ କରାଏ, ବୈରାଗ୍ୟ ଜନ୍ମାଏ । ଜ୍ଞାନ ଦାନ କରାଏ । ଏହାହିଁ ଶ୍ରୀମଦ୍ ଭାଗବତର ମାହାତ୍ମ୍ୟ ।

ଭଗବାନ ଶ୍ରୀକୃଷ୍ଣଙ୍କ କଥା ଶୁଣିବାକୁ ଆରମ୍ଭ କଲେ ଆସ୍ତେ ଆସ୍ତେ ରୁଚି ଆସିବ, ଆଗ୍ରହ ବଢ଼ିବ । ଲାଳସା ବଢ଼ି ଆନନ୍ଦ ଆଣିବ । ହୃଦୟ ପବିତ୍ର ହେବ, ମନ ନିର୍ମଳ ହେବ, ନିଜ ହୃଦୟରେ ଭଗବାନଙ୍କ ସ୍ଥିତି ଅନୁଭବ କରିବ ।

ସତ୍ତ୍ୱ, ରଜ, ତମ, ପ୍ରକୃତିର ଗୁଣ ଅଟେ । ସୃଷ୍ଟି, ସ୍ଥିତି ଓ ପ୍ରଳୟ ସାଧିତ ହୁଏ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଦ୍ୱାରା । ସତ୍ତ୍ୱ ଗୁଣର ଉତ୍କର୍ଷ

Digitized by srujanika@gmail.com

ସାଧନ ହିଁ ଭଗବାନଙ୍କ ପ୍ରାପ୍ତି । ବେଦ କହେ ସମସ୍ତ ଯୋଗ, କର୍ମକାଣ୍ଡ, ସମସ୍ତ ଜ୍ଞାନ କେବଳ ଭଗବାନଙ୍କୁ ପାଇବା ପାଇଁ ।

ଅର୍ଜ୍ଜୁନ ଯୁଦ୍ଧ ପରେ କହିଥିଲେ, ଭଗବାନ ଶ୍ରୀକୃଷ୍ଣଙ୍କ ଛଡ଼ା ସେ କିଛି କରିନାହାନ୍ତି—ପ୍ରମାଣ କରିଛନ୍ତି । ସେଥିପାଇଁ ସେ ତାଙ୍କ ପ୍ରତି ଏକନିଷ୍ଠ ଶ୍ରଦ୍ଧାଭକ୍ତି ପ୍ରଦର୍ଶନ କରିଛନ୍ତି । ଭକ୍ତିଦ୍ୱାରା ମାୟାଶୂନ୍ୟ ହୋଇ ସେ ଭଗବାନଙ୍କ ପ୍ରତି ପ୍ରେମଭକ୍ତି କରି ନିଜର ଆତ୍ମୋନ୍ନତି କରିଥିଲେ । ଯୁଧିଷ୍ଠିର ଶେଷରେ ସବୁ ସଂସାର ବନ୍ଧନ ତ୍ୟାଗ କରି ଗଲେ । ସେ ତାଙ୍କ ମନଜଗତରେ ବାକ୍ୟକୁ ମନରେ, ମନକୁ ପ୍ରାଣରେ, ପ୍ରାଣକୁ ଅପାନରେ, ଅପାନକୁ ମୃତ୍ୟୁରେ ଲୀନ କରାଇଲେ । ନିଜର ଶେଷରେ ମୃତ୍ୟୁ ଅବଶ୍ୟମ୍ଭାବୀ ଜାଣି ପରୀକ୍ଷିତଙ୍କୁ ରାଜ୍ୟଭାର ଦେଲେ । ଭଗବାନଙ୍କ ପ୍ରତି ପ୍ରେମଭକ୍ତି ତାଙ୍କ ବୁଦ୍ଧି ବିବେକକୁ ଉଜ୍ଜ୍ୱଳ କଲା । ରାଜା ପରୀକ୍ଷିତ ରାଜତ୍ୱ କଲେ । ଉତ୍ତରଙ୍କ କନ୍ୟା ଇରାବତୀଙ୍କୁ ବିବାହ କଲେ । ଜନମେଜୟ ଇତ୍ୟାଦି ତାଙ୍କର ଚାରିପୁତ୍ର ହେଲେ । ସେ ଗଙ୍ଗା କୂଳରେ ତିନଥର ଅଶ୍ୱମେଧ ଯଜ୍ଞ କରିଥିଲେ । ତଥାପି କଳିର ପ୍ରଭାବ ଅଧିକ ହେଲା ।

ନିଜର ଦୁଷ୍କର୍ମରୁ ହେଉ, ଅଭିଶାପରୁ ହେଉ, କଳିର ପ୍ରଭାବରୁ ହେଉ, ପ୍ରାରବ୍ଧରୁ ହେଉ ବସିବାକୁ ନ ପାଇ, ତୃଷ୍ଣା ମେଣ୍ଟାଇବା ପାଇଁ ଜଳ ନ ପାଇ ରାଜା ପରୀକ୍ଷିତ ମଲା ସର୍ପ ନେଇ ଶୌମିକ ଋଷି ଗଳାରେ ପକାଇଲେ । ଶୌମିକ ଋଷିଙ୍କ ପୁତ୍ର ଅଭିଶାପରୁ ତକ୍ଷକ ଦ୍ୱାରା ଦଂଶିତ ହୋଇ ମୃତ୍ୟୁ ହେବ ଜାଣିଲେ । ରାଜା ପରୀକ୍ଷିତ ନିଜ ପୁତ୍ର, ଜନମେଜୟଙ୍କୁ ରାଜ୍ୟ ଦେଇ ଗଙ୍ଗାକୂଳରେ ଆହାରଶୂନ୍ୟ ହୋଇ କୁଶାସନରେ ବସି ରହିଲେ । ଅନେକ ମୁନି ଋଷିଙ୍କର ସମାବେଶ ହେଲା । ୧୬ ବର୍ଷ ବୟସର ଶୁକଦେବ ବିଦ୍ୱାନ ବିକାରଶୂନ୍ୟ ସମଦର୍ଶୀ ଥିଲେ । ସେ ଉପସ୍ଥିତ ହୁଅନ୍ତେ ମରିବା ପାଇଁ ଯାଉଥିବା ଲୋକ ଭଗବାନଙ୍କୁ ପାଇବାପାଇଁ ସର୍ବୋଚ୍ଚ କର୍ତ୍ତବ୍ୟ କଣ ଏକଥା ରାଜା ପରୀକ୍ଷିତଙ୍କୁ ଶ୍ରୀମଦ୍ ଭାଗବତରୁ ବୁଝାଇଲେ ।

ଆତ୍ମୋନ୍ନତି ହିଁ ସର୍ବୋଚ୍ଚ କାମ୍ୟ, ଗୃହସ୍ଥର କର୍ତ୍ତବ୍ୟ କରିବା, ଅର୍ଜନ କରିବା, ପରିବାର ପ୍ରତିପୋଷଣ, ଆହାର, ନିଦ୍ରା, ମୈଥୁନ ଓ ସ୍ତ୍ରୀ ଓ ପିଲା-ମାନଙ୍କର ପ୍ରତିପାଳନ ଜୀବନର ଲକ୍ଷ୍ୟ ନୁହେଁ । ସେ ମୋକ୍ଷ ଚାହାନ୍ତି,

Digitized by srujanika@gmail.com

ସେମାନେ ଭଗବାନ, ତାଙ୍କ ଗୁଣବାନ, ତାଙ୍କର ଲୀଳା ମାଧ୍ୟମରେ ପାଆନ୍ତି । ଆତ୍ମଜ୍ଞାନ, ଭଗବାନଙ୍କ ପ୍ରତି ଭକ୍ତି ହିଁ ମନୁଷ୍ୟ ଜୀବନର ସାର୍ଥକତା,, ସର୍ବୋଚ୍ଚ ଉପହାର । ଏହି ମୋକ୍ଷ ମିଳିବ, ମିଳେ, ଆତ୍ମଜ୍ଞାନ ଦ୍ୱାରା, ଭଗବାନଙ୍କ ପ୍ରତି ଭକ୍ତିଦ୍ୱାରା, ପବିତ୍ର କର୍ତ୍ତବ୍ୟନିଷ୍ଠାଦ୍ୱାରା, ଭଗବାନଙ୍କର ପବିତ୍ର ଗୁଣ ପ୍ରବଚନ ଦ୍ୱାରା । ପୁରାଣମାନଙ୍କ ମଧ୍ୟରେ ଶ୍ରୀମଦ୍ ଭାଗବତ ବେଦ ପରି ପବିତ୍ର ଗ୍ରନ୍ଥ ଅଟେ । ଏହାର ପଠନ ଭଗବାନଙ୍କ ପ୍ରତି ଶୁଦ୍ଧ ଭକ୍ତି ଆଣିଦିଏ ପ୍ରାଣରେ । ଏହି ଶ୍ରୀମଦ୍ ଭାଗବତ, ଦ୍ୱାପରର ଶେଷଠାରୁ ଶୁକଦେବ ତାଙ୍କ ପିତା ମହର୍ଷି ଦ୍ୱୈପାୟନଙ୍କଠାରୁ ଶିକ୍ଷା କରିଥିଲେ । ରାଜା ପରୀକ୍ଷିତଙ୍କୁ ଶୁକଦେବ କହିଲେ ଶ୍ରୀମଦ୍ ଭାଗବତ ପଠନ, ଭଗବାନ ଶ୍ରୀକୃଷ୍ଣଙ୍କ ଗୁଣ କୀର୍ତ୍ତିନଦ୍ୱାରା ହୃଦୟ ବିଗଳିତ ହୁଏ । ପୁରାଣ ପଠନଦ୍ୱାରା ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ନିଷ୍କାମ ଭକ୍ତି ଜନ୍ମେ । ଭଗବାନହିଁ ମୋକ୍ଷଦାତା । ତାଙ୍କର ନାମକୀର୍ତ୍ତନ ମୋକ୍ଷ ପ୍ରାପ୍ତିର ଉପାୟ ଓ ଉଦ୍ଦେଶ୍ୟ, ସର୍ବଭୟ ହରଣକରେ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ସର୍ବୋଚ୍ଚ ହିତ ପାଇଁ ଉତ୍ସର୍ଗ ହୁଏ । ଏହି ସାତଦିନ ରାଜାଙ୍କର ଜୀବନ । ତେଣୁ ମଙ୍ଗଳପାଇଁ କାର୍ଯ୍ୟ କରିବା ଉଚିତ । ଜୀବନାବସାନ ବେଳେ ଭୟଶୂନ୍ୟ ହେବା ଉଚିତ । ଶରୀର ସମସ୍ତ ବନ୍ଧନ ତୁଟାଇବା ଉଚିତ । ପବିତ୍ର ସ୍ଥାନରେ ବସି ମନରେ ପ୍ରଣବ ବାରମ୍ବାର ଉଚ୍ଚାରଣ କରିବା ଉଚିତ । ଆତ୍ମସୁଖରୁ ବଞ୍ଚିତ ହୋଇ ଭଗବାନଙ୍କ କଥା ସ୍ମରଣ କରିବା ଉଚିତ । ମନ ସଦାବେଳେ ସେଠାରେ ରହିବା ଉଚିତ । ତାହା ଆଣିଦେବ ସ୍ୱର୍ଗୀୟ ଆନନ୍ଦ ଓ ପ୍ରେମ । ରଜ ଓ ତମଗୁଣଦ୍ୱାରା ମନ ଇତସ୍ତତ ହେଲେ ମନକୁ ଏକନିଷ୍ଠ, ଏକାଗ୍ରତା ସହ ଭଗବାନଙ୍କ ନିକଟରେ ରଖିବା ଉଚିତ । ଭକ୍ତି ସାହାଯ୍ୟରେ ଭଗବାନଙ୍କ ଦର୍ଶନହିଁ ଯୋଗ । ପାତାଳ, ରସାତଳ, ଅତଳ, ଭୁବର୍ଲୋକ, ମହାର୍ଲୋକ, ସତ୍ୟଲୋକ, ଇନ୍ଦ୍ର ସୂର୍ଯ୍ୟ, ଚନ୍ଦ୍ର, ବେଦ, ଯମ, ମାୟା, ପ୍ରଜାପତି, ବରୁଣ ଇତ୍ୟାଦି ସେହି ଭଗବାନ ବିରାଟ ପୁରୁଷଙ୍କର ଅଙ୍ଗ ପ୍ରତ୍ୟଙ୍ଗ ।

ମନୁଷ୍ୟ ଆତ୍ମସୁଖପାଇଁ ମାୟାର ବଶବର୍ତ୍ତୀ ହୋଇ ଘୂରିଆଡ଼େ ବୁଲେ ମାତ୍ର ପାଏନା । ଶରୀର ରକ୍ଷାପାଇଁ ଯେତିକ ନିତାନ୍ତ ଦରକାର ବୁଦ୍ଧିମାନ ଲୋକ ସେତିକ ସୁଖ କରିବ । ଶାରୀରିକ ସୁଖ ଅଳୀକ । ତେଣୁ ସଂସାର ସୁଖରେ ଆସକ୍ତ ହେବନାହିଁ । ବାହୁ ଯଦି ତକିଆ କାମ କରେ, ହାତ ଯଦି

Digitized by srujanika@gmail.com

ପାପର କାର୍ଯ୍ୟକରେ, ଗଛର ବଲକଲ ଯଦ ଲୁଗାର କାମ କରେ ତେବେ ତାହା ହିଁ ହେଉ । ଦେଖନ୍ତୁ ତ ଗଛ ତା'ର ପତ୍ର ଫଳ ଦାନଦ୍ୱାରା, ନଦୀ ପାଣିଦ୍ୱାରା, ପର୍ବତ ଗୁମ୍ଫା ଆଶ୍ରୟ ଦେଇ ଅପର ଲୋକଙ୍କୁ ସାହାଯ୍ୟ କରୁଛି । ତେଣୁ ପରମେଶ୍ୱର ନଜର ସନ୍ତାନକୁ କୋଳକୁ ନେବାକୁ ସଦା ବ୍ୟଗ୍ର । ଏହା ହିଁ ଧ୍ୟେୟ ହେଉ । ଏହାଦ୍ୱାରା ଅଜ୍ଞତା, ଅସତ୍ୟ ଡୁବେଇଯିବ, ସତ୍ୟର ଆଲୋକ ପଥ ଦେଖାଇବ ।

ଯେ ତାର ଶରୀର ତ୍ୟାଗ କରିବା ଉପରେ, ତାର ସମସ୍ତ ଓ ସ୍ଥାନ ଜ୍ଞାନ ରହିବା ଉଚିତ ନୁହେଁ । ଇନ୍ଦ୍ରିୟ ସଂଯମ ଆଣିବ ମନରେ ମୁକ୍ତି, ବୁଦ୍ଧି କ୍ଷେତ୍ରଜ୍ଞରେ ପରିଣତ ହେବ ଯାହା ପରିଣତ ହେବ ପରମେଶ୍ୱରଙ୍କଠାରେ । ଆତ୍ମ-ଶାନ୍ତି ନେଇଯିବ ପରମଶାନ୍ତି ନିକଟ—ମିଳାଇବ ପରମାତ୍ମା ସହିତ ।

ମନ ଓ ଇନ୍ଦ୍ରିୟକୁ ନେଇ ତନି ଗୁଣରେ ଛଆରି ଏ ବ୍ରହ୍ମାଣ୍ଡକୁ ଛାଡ଼ି ଯୋଗୀ ତାଙ୍କର ଜ୍ଞାନଯୋଗ ବଳରେ ଶରୀରକୁ ବାୟୁପରି ହାଲୁକାକରି ତନି ପୁରକୁ ଯାଇପାରନ୍ତି । ଏହା ହିଁ ବ୍ରହ୍ମଲୋକର ପରିଦର୍ଶନ ।

ପବିତ୍ରଜ୍ଞାନପାଇଁ ବୃହସ୍ପତି, ଇନ୍ଦ୍ରିୟମାନଙ୍କର ପ୍ରଖରତା ପାଇଁ ଇନ୍ଦ୍ର, ବଂଶବୃଦ୍ଧି ପାଇଁ ପ୍ରଜାପତି, ସାଂସାରିକ ଉନ୍ନତିପାଇଁ ମାୟା, ବଳପାଇଁ ଅଗ୍ନି, ଧନପାଇଁ ବାୟୁ, ଶକ୍ତିପାଇଁ ରୁଦ୍ର, ଖାଦ୍ୟପାଇଁ ଅଦିତି, ରାଜ୍ୟପାଇଁ ବିଶ୍ୱଦେବ, ପ୍ରଜାମାନଙ୍କ ସହିତ ସହାବସ୍ଥାନ ମଧ୍ୟ ଦୀର୍ଘାୟୁ ପାଇଁ ଅଶ୍ୱିନୀ କୁମାର, ସମ୍ମାନ ପାଇଁ ପୃଥିବୀ, ଶରୀର ସୌନ୍ଦର୍ଯ୍ୟ ପାଇଁ ଗନ୍ଧର୍ବ, ସୁନ୍ଦରୀ ସ୍ତ୍ରୀ ପାଇଁ ଉର୍ବଶୀ, ପ୍ରଭୁତ୍ୱ ପାଇଁ ବ୍ରହ୍ମା, ସୁନାମପାଇଁ ବିଷ୍ଣୁ, ବିଦ୍ୟାପାଇଁ ଶିବ, ପାରିବାରିକ ସୁଖପାଇଁ ଉମା, ପବିତ୍ର ଜୀବନ ପାଇଁ ବିଷ୍ଣୁ ପୂଜ୍ୟ ଅଟନ୍ତି । ବୁଦ୍ଧିମାନ୍ ଲୋକ ପରସ୍ପର ପରମେଶ୍ୱରଙ୍କୁ ନିଷ୍ଠାର ସହିତ ଭକ୍ତିକରିବା ଉଚିତ । ଏସବୁ ଦେବତାଙ୍କ ଜରିଆରେ ପରମପିତାଙ୍କୁ ଭକ୍ତିକଲେ ହୃଦୟ ପବିତ୍ର ହେବ, ଭରିଯିବ ଆନନ୍ଦରେ ।

ଶୁକ ବାସୁଦେବଙ୍କୁ ଭକ୍ତି କରନ୍ତି । ପରୀକ୍ଷିତ ରାଜା ମଧ୍ୟ ବାଲ୍ୟକାଳରୁ ହରିଙ୍କୁ ପ୍ରାର୍ଥନା କରନ୍ତି । ଏହି ହରିଙ୍କର ନାମ କୀର୍ତ୍ତନ ଭକ୍ତି, ଭକ୍ତ ଧର୍ମର ଉପକାରିତା ଏ କଳିଯୁଗରେ ବର୍ଣ୍ଣିତ ଅଛି, ଶ୍ରୀମଦ୍ ଭାଗବତରେ । ଭଗବାନ ଏ ଭାଗବତ ପୁରାଣକୁ କହିଛନ୍ତି ବ୍ରହ୍ମାଙ୍କୁ । ବ୍ରହ୍ମା ନାରଦଙ୍କୁ, ନାରଦ

Digitized by srujanika@gmail.com

କହିଛନ୍ତି ବ୍ୟାସଙ୍କୁ ସରସ୍ୱତୀ ନଦୀକୂଳରେ । ଶୁକ ନିଜ ପିତା ବ୍ୟାସଙ୍କଠାରୁ ଶିଖିଲେ । ପ୍ରଭୁ ସଂକର୍ଷଣ ଋଷି ସନତ୍ କୁମାରଙ୍କୁ ଏହା କହିଥିଲେ ।

ଶିଶୁ ହେଲେ ମଧ୍ୟ, ଅଳ୍ପ ବୟସ ହେଲେ ମଧ୍ୟ ଧ୍ରୁବ ପ୍ରହ୍ଲାଦର କରୁଣ ପ୍ରାର୍ଥନା, ନିଷ୍ଠାପର ଭକ୍ତି ଭଗବାନଙ୍କୁ ସେମାନଙ୍କ ନିକଟକୁ ଟାଣି ଆଣିଥିଲା । ମୋକ୍ଷ ଦାନକରି ଅଜର ଅମର କଲେ ପ୍ରଭୁ ସେମାନଙ୍କୁ ।

ରାଜା ଦୁର୍ଯ୍ୟୋଧନର ଭୁରି ଭୋଜନ ଛାଡ଼ି ବିଦୁର ଘରେ ଅଯାଚିତ ଭାବରେ ଅତିଥି ହେଲେ । ଥିଲା ବିଦୁରଙ୍କର ଶ୍ରଦ୍ଧା, ଥିଲା ତାଙ୍କର ପ୍ରଗାଢ଼ ଭକ୍ତି, ସମସ୍ତ ତୀର୍ଥଯାତ୍ରା, କରି ସବୁ ସ୍ଥାନରେ ଭଗବାନଙ୍କର ପ୍ରାର୍ଥନା କରି ଭଗବାନଙ୍କ ପ୍ରତି ଆଦର୍ଶ ପ୍ରେମଭକ୍ତି ଦେଖାଇଥିଲେ । ସେ ସନ୍ତ ସେ ପବିତ୍ର ସେ ଥିଲେ ଭଗବାନ ଶ୍ରୀକୃଷ୍ଣଙ୍କର ବନ୍ଧୁ । ଦାରିଦ୍ର୍ୟ ତାର ପ୍ରତିବନ୍ଧକ ନୁହେଁ ବରଂ ସହାୟକ ।

ଯଉ ଗୃହରେ କୌଶଳରେ ପଞ୍ଚ ପାଣ୍ଡବଙ୍କୁ ରଖାଇ ନିଆଁ ଲଗାଇଲେ ମଧ୍ୟ, ଧାର୍ମିକ, ଭଗବାନ ଭକ୍ତ ସେମାନେ ଉଦ୍ଧାର ପାଇଲେ । ସଭାରେ ଦ୍ରୌପଦୀଙ୍କୁ ଉଲଗ୍ନ କଲାବେଳେ, ସେ ଯେତେବେଳେ କାନ୍ଦି କାନ୍ଦି ଦୁଇ ହାତଟୋଳି ଭଗବାନଙ୍କୁ ପ୍ରାର୍ଥନା କଲେ । ତାଙ୍କର ଆକୁଳ କ୍ରନ୍ଦନ, ପ୍ରାଣସ୍ପର୍ଶୀ ପ୍ରାର୍ଥନା ଭଗବାନଙ୍କ ପ୍ରତି ନିବେଦନ ତାଙ୍କୁ ଉଦ୍ଧାର କରିଥିଲା । ସତ୍ୟର ସାଧକ ଯୁଧିଷ୍ଠିର କାହାରିକୁ ଶତ୍ରୁ ବୋଲି ଭାବୁ ନଥିଲେ । ତାଙ୍କୁ ଅନ୍ୟାୟ ଜୁଆଖେଳରେ ପ୍ରବର୍ତ୍ତାଇ, ହରାଇ, ବଣକୁ ୧୩ ବର୍ଷ ପାଇଁ ବିଦା କରିଥିଲେ । ଯେତେ ଯାତନା, ଯେତେ ଦୁଃଖ, ଯେତେ କଷ୍ଟ ସେମାନେ ସହିଲେ, ତଥାପି ଧର୍ମ ତାଙ୍କ ପକ୍ଷରେ, ନ୍ୟାୟ ତାଙ୍କ ପକ୍ଷରେ; ତେଣୁ ଜୟ ତାଙ୍କ ପକ୍ଷରେ ।

ଏମାନଙ୍କର ଓ ଏମାନଙ୍କ ପରି ଅନେକଙ୍କର ବିକଳ ପ୍ରାର୍ଥନା, ଭାବନାତୀତ ଭଗବାନଙ୍କୁ ଭାବନା ଭିତରେ ଅବତରଣ କରାଇଥିଲେ, ଭକ୍ତମାନଙ୍କୁ, ଧାର୍ମିକମାନଙ୍କୁ ଉଦ୍ଧାର କରିବାପାଇଁ ।

ଦ୍ୱାପର ଶେଷ ଓ କଳିଯୁଗର ଆରମ୍ଭ, ଏହି ସନ୍ଧି ସମୟରେ ମହର୍ଷି ବେଦବ୍ୟାସ ଦେବର୍ଷି ନାରଦଙ୍କ ଉପଦେଶ ଅନୁସାରେ ଶ୍ରୀକୃଷ୍ଣଙ୍କର ସମଗ୍ର ଲୀଳା କଥା ଶ୍ରୀମଦ୍ ଭାଗବତ ଗ୍ରନ୍ଥ ମାଧ୍ୟମରେ ବର୍ଣ୍ଣନା କଲେ । ମହର୍ଷି

Digitized by srujanika@gmail.com

ବେଦବ୍ୟାସ ଶ୍ରୀମଦ୍ ଭାଗବତ ଶାସ୍ତ୍ରକୁ ଆବିଷ୍କାର କଲେ । ତାଙ୍କୁ ତୃପ୍ତି ମିଳିଲା । ଭକ୍ତମାନେ ଶ୍ରୀମଦ୍ ଭାଗବତ ଆସ୍ୱାଦନ କରି ଆନନ୍ଦରେ ମଗ୍ନ ହେଲେ । ଏହାହିଁ ପରା ଶାନ୍ତିରେ ପହଞ୍ଚିବାର ମାର୍ଗ ।

ସବୁ ଶାସ୍ତ୍ରର ସାର ଶ୍ରୁତି—ବେଦ ଓ ଉପନିଷଦ (ବେଦାନ୍ତ) । ବେଦାନ୍ତ ସମସ୍ତଙ୍କର ନିତ୍ୟ କଲ୍ୟାଣ କରୁଛି । ଦୁଃଖରୁ ନିବୃତ୍ତିର ଉପାୟ ଶ୍ରୁତି କହେ । ସଂକୀର୍ଣ୍ଣତା ଅଶାନ୍ତିର କାରଣ । ଅସୀମଙ୍କ ସହିତ ମିଳିବା ହିଁ ଚିରଦିନ ଦୁଃଖଦ୍ୱାରକ । ଅସୀମ ହିଁ ବ୍ରହ୍ମ । ବ୍ରହ୍ମ ପ୍ରାପ୍ତି ପାଇଁ ଉପାସନା ହିଁ ଉପାୟ । ଉପାସନାର ଉପାସ୍ୟ ନିକଟକୁ ଆସିବା ବ୍ରହ୍ମଭୂତ ହେବା ମାନେ ଦୁଃଖାତୀତ ହେବା ।

ଉପାସନାଦ୍ୱାରା ବ୍ରହ୍ମଙ୍କ ସାନ୍ନିଧ ଲାଭର ଯୋଗ୍ୟତା ସମସ୍ତଙ୍କର ନଥାଏ । ତେଣୁ ଭଗବାନ ଅନୁଗ୍ରହ କରି, କରୁଣା କରି ପରଂବ୍ରହ୍ମ ମନୁଷ୍ୟ ରୂପ ଧାରଣ କରି ଆକର୍ଷଣ କରୁଛନ୍ତି ଆମର ମନ ଓ ପ୍ରାଣକୁ । ଆକର୍ଷଣ କରନ୍ତି ବୋଲି ତାଙ୍କ ନାମ 'କୃଷ୍ଣ' ।

ବେଦାନ୍ତ କହେ ବ୍ରହ୍ମ ଅରୂପ, ଅସ୍ପର୍ଶ, ଅବ୍ୟୟ, ଇନ୍ଦ୍ରିୟାତୀତ ଧ୍ୟାନ ଧାରଣାର ଅତୀତ । ଚିନ୍ତାଦ୍ୱାରା ତାଙ୍କର ସନ୍ଧାନ ମିଳି ପାରେନା । ମାତ୍ର ଶ୍ରୀମଦ୍ ଭାଗବତ କହେ ଭାବନାତୀତ ଭଗବାନ, ନିର୍ଗୁଣ, ନିରାକାର, ନିର୍ବିଶେଷ ପରଂବ୍ରହ୍ମ ଭାବନା ଭିତରେ ଆସିଥିଲେ, ସଗୁଣ, ସାକାର ହିଁ, ଶ୍ରୀକୃଷ୍ଣ—ପରମାତ୍ମା । ଶ୍ରୀମଦ୍ ଭାଗବତର ଆଶ୍ରୟ ନେଲେ ଭଗବାନ ଶ୍ରୀକୃଷ୍ଣଙ୍କ କଥା ଶୁଣିବା । ସମସ୍ତ ଶାସ୍ତ୍ର କହେ ଭଗବାନଙ୍କୁ ପାଇବା ଅତି ଦୁଷ୍କର । ଶାସ୍ତ୍ର ଅଧ୍ୟୟନ ସ୍ତ୍ରୀ, ଶୁଦ୍ର, ବୈଶ୍ୟ, କ୍ଷତ୍ରିୟମାନଙ୍କର ଅଧିକାର ନାହିଁ । ବ୍ରାହ୍ମଣ କେବଳ ଅଧିକାରୀ । ଶ୍ରୀମଦ୍ ଭାଗବତ କହୁଛନ୍ତି ଯେ ଈଶ୍ୱରଙ୍କୁ ପାଇବାର ଅଧିକାରୀ ସମସ୍ତ ନରନାରୀ । ତାର ବି ସରଳ ବାଟ କହିଛନ୍ତି । ଶୁଦ୍ଧ ପ୍ରେମ ଦ୍ୱାରା ଈଶ୍ୱରପ୍ରାପ୍ତି ହୁଏ । ଶୁଦ୍ଧ ପ୍ରେମରେ ସ୍ୱାର୍ଥପରତା ନାହିଁ, ଅଭିସନ୍ଧି ନାହିଁ । ଏ ଶୁଦ୍ଧ ପ୍ରେମ ସମସ୍ତଙ୍କର ଆସିପାରେ ସାଧନାଦ୍ୱାରା । ଏହାର ଉଦ୍ଦେଶ୍ୟ ହେଉଛି ଚିତ୍ତର ମାର୍ଜନ । ଏ ମାର୍ଜନ ହୁଏ ଭଜନଦ୍ୱାରା । ଏହି ଭାଗବତ ଧର୍ମ, ଏହି ପ୍ରେମ ଧର୍ମ, ଏହି ପ୍ରେମ ଭକ୍ତି ଆମର ଜୀବନ୍ତ ଭକ୍ତି, ଜାଗ୍ରତ ଭକ୍ତି ହେବା ଉଚିତ । ଆମର ଭଗବାନଙ୍କ ପ୍ରତି ଶ୍ରଦ୍ଧା ଜୀବନ୍ତ

Digitized by srujanika@gmail.com

ହେବା ଉଚିତ, ଏକାଗ୍ର ଚିତ୍ତରେ ହେବା ଉଚିତ । ଏହାହିଁ ଭଗବାନଙ୍କୁ ପାଇବାର ପ୍ରଧାନ ମାର୍ଗ । ଉପନିଷଦ ମାର୍ଗରେ ଜ୍ଞାନ ପ୍ରଧାନ, ବୈଦିକ ମାର୍ଗରେ କର୍ମ ପ୍ରଧାନ, ଭାଗବତ ଧର୍ମରେ ପ୍ରେମ ପ୍ରଧାନ—ଯାହା ଭକ୍ତି ଧର୍ମର ସରଳମାର୍ଗ । ଏଥିରେ ଅଛି ସମର୍ପଣଭାବ, ବିଶ୍ୱାତ୍ମଭାବ—(ବିଶ୍ୱାତ୍ମନା, ବିଶ୍ୱାତ୍ମା) । ଭାଗବତ ଧର୍ମର ଚତୁରତା ଏହି ଯେ, ଯଦି ଭଗବାନ କୃଷ୍ଣଙ୍କୁ ସବୁ ଅର୍ପଣ କରିଗଲ, ତାହାହେଲେ ଭୁଲ ହେବ ନାହିଁ, କାରଣ ସମର୍ପିତ ଜୀବନରେ 'ମୋ'ଠାରୁ ସଂସାର ଭିନ୍ନ ନୁହେଁ । ଏକାଗ୍ର ଚିତ୍ତରେ ପରମାତ୍ମାଙ୍କର ଭଜନ ହେବା ଉଚିତ, ଯାହା ଆଣି ଦେବ ଶରଣାପନ୍ନଭାବ । ଈଶ୍ୱରାନୁଗତ ମନୁଷ୍ୟର ସତ୍, ମହତ୍ ତଥା ଉଚିତ କର୍ତ୍ତବ୍ୟ ପ୍ରଧାନ ବୃତ୍ତିରୂପେ ରୂପାୟିତ ହୁଏ । ତାର ଐଶୀଶକ୍ତି ପ୍ରତି ଅନୁରକ୍ତତା, ଭକ୍ତି, ଭୟ, ଈଶ୍ୱରଭକ୍ତ ପ୍ରେମିକ ସମଗ୍ର ବିଶ୍ୱକୁ ଏକ ପରିବାର, ସମଗ୍ର ମାନବ ସମାଜକୁ ଏକ ଭ୍ରାତୃତ୍ୱ ଭାବରେ ଗ୍ରହଣ କରେ । ଐଶୀଶକ୍ତି ସମତା ହିଁ ନିଜର ଓ ଅନ୍ୟର ଦୁଃଖ, ଦୈନ୍ୟ, ସୁଖ ପ୍ରଭୃତି ଏକ ସୂକ୍ଷ୍ମ ବନ୍ଧନରେ ଆବଦ୍ଧ କରିଥାଏ । ଏହି ପ୍ରେମ-ଧର୍ମ ଗଢ଼ିତୋଳେ ନୈତିକ ଜୀବନଯାପନ, ସତ୍‌ପନ୍ଥାନୁସରଣ, ସୁଶୃଙ୍ଖଳିତ ସୁନିୟନ୍ତ୍ରିତ ପରମ ଆନନ୍ଦମୟ ସମାଜ ଗଠନ, ସମଗ୍ର ବିଶ୍ୱମାନବର କଲ୍ୟାଣ ଓ ବିଶ୍ୱଶାନ୍ତି । ଆଭ୍ୟନ୍ତରୀଣ ବିଷମତା, ଅନୀତି, ସାମାଜିକ ଅସ୍ଥିରତା, ବିକଳାଙ୍ଗ ସମାଜ, ବିକୃତ ଯୁବ ସମାଜ, ଯୁବଶକ୍ତିର ଅପଚୟ, ଜନଶକ୍ତିର ବିପର୍ଯ୍ୟୟ, ସାମାଜିକ ଜଘନ୍ୟତା ଏ ସବୁର ବିଲୋପ ଆଣେ । ଏ ସମଗ୍ର ବିଶ୍ୱର ସ୍ରଷ୍ଟା ଏକ । ସେ ସମସ୍ତ କାର୍ଯ୍ୟର ନିୟନ୍ତ୍ରକ । ଆମ୍ଭେମାନେ ସମସ୍ତେ ତାଙ୍କ ସନ୍ତାନ । ପ୍ରାଚ୍ୟ, ପାଶ୍ଚାତ୍ୟ, ଭାରତୀୟ, ଇଉରୋପୀୟ, ଆମେରିକାନ୍, ଋଷିଆନ୍, ବ୍ରିଟିଶ୍, ହିନ୍ଦୁ, ବୌଦ୍ଧ, ଜୈନ, ଶିଖ, ମୁସଲମାନ, ଖ୍ରୀଷ୍ଟିଆନ ମନୋଭାବ ଅଳୀକ ।

ଏ ପ୍ରେମ ଧର୍ମର ଆଧ୍ୟାତ୍ମିକ ପ୍ରୟୋଜନୀୟତା ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ସମାନ । ଯେଉଁଠାରେ ଉଗ୍ର ସାମାଜିକ ବୈଷମ୍ୟ ବେଶୀ, ଯେଉଁଠାରେ ସମାଜ ଉଦ୍ଧତ, ଯେଉଁଠାରେ ମାନବୀୟ ଅଧିକାର ବେଶୀ; ଅର୍ଥନୈତିକ ହେଉ ବା ରାଜନୈତିକ ହେଉ ସେହିଠାରେ ହିଁ ଆଧ୍ୟାତ୍ମିକ ସାମ୍ୟ ବଡ଼ ଦରକାରୀ, ଯାହାମିଳେ ଭାଗବତ ଧର୍ମରୁ । ନହେଲେ ହିଂସା ବୃତ୍ତିଦ୍ୱାରା, ଅସାମ୍ୟଭିତ୍ତିକ

Digitized by srujanika@gmail.com

ଧର୍ମର ପ୍ରତିହିଂସା ଆକ୍ରମଣ ହୋଇପାରେ । ଶେଷରେ ଲୋପ ସାଧନ କରିବାକୁ ଅପଚେଷ୍ଟା ମଧ୍ଯ କରିବାକୁ କୁଣ୍ଠିତ ହେବେ ନାହିଁ ।

ନିମ୍ନଗତ ଆଦିବାସୀ, ହରିଜନ ଓ ଶୂଦ୍ର ସମାଜ ତଥା ସ୍ତ୍ରୀ ସମାଜ ଅନାର୍ଯ୍ୟ ଅସୁର, ମ୍ଳେଚ୍ଛ, ରାକ୍ଷସ ଇତ୍ୟାଦି ଯାହାସବୁ କୁହାଯାଇଛି ତାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେଣି । ଧନ୍ୟ ଧର୍ମର ଲୋକେ ବିଦେଶୀ ଲୋକେ ମଧ୍ଯ ସେହିପରି ବ୍ୟବହାର କଲେଣି । ଏଥିପାଇଁ ଧର୍ମଯାଜକମାନେ ଧର୍ମର ପ୍ରବର୍ତ୍ତନ ଆଣିବା ଉଚିତ ।

ଭାଗବତ ଧର୍ମ କଥା ଲେଖାଯାଇଛି ଶ୍ରୀମଦ୍ ଭାଗବତରେ । ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା କଥା, ପ୍ରେମ ଧର୍ମ କଥା, ଧର୍ମ ସାମ୍ୟ କଥା—ଠିକ୍ ଏସବୁ ଆଗ୍ରହ କଲେ ଶ୍ରୀଚୈତନ୍ୟ 'ନାମ' ଆବିଷ୍କାର କରି, ଏହାର ମହତ୍ତ୍ୱ ପ୍ରଚାର କରି । ସେ ଆଣିଲେ ବିପ୍ଳବ ଷୋଡ଼ଶ ଶତାବ୍ଦୀରେ । ନିମ୍ନ ଶୂଦ୍ରମାନଙ୍କୁ ସମାଜରେ ପଦମର୍ଯ୍ୟାଦା ଦିଆଗଲା ଭକ୍ତିବାଦ ଓ ନାମ-କୀର୍ତ୍ତନ ଜରିଆରେ । ସାମାଜିକ ପାପସ୍ରୋତ ଓ ବୈଷମ୍ୟର ଉପଶମ ହେଲା । ସେ ଗଢ଼ି ତୋଳିଲେ ସୁସଂସ୍କୃତ ସମାଜ । ଆଜି କିନ୍ତୁ କୀର୍ତ୍ତନରେ ଭାବୋଚ୍ଛ୍ୱାସ, ଗମ୍ଭୀରତା, ବିହ୍ୱଳତାର ଅଭାବ ପରିଲକ୍ଷିତ ହୁଏ । ଗତାନୁଗତିକ ଭାବରେ ହୁଏ । ହୁଏ ପରମ୍ପରା ରକ୍ଷାପାଇଁ ଆନୁଷ୍ଠାନିକ ଭାବରେ । ସାମାଜିକ ଓ ଧର୍ମ ବୈଷମ୍ୟ ମୁଣ୍ଡ ଟେକିଲାଣି । ଧର୍ମ ଓ ଆନୁଷ୍ଠାନିକ ଧର୍ମ ଅସାମ୍ୟକୁ ଆଶ୍ରୟ କରି ଗତି କଲେଣି । ଧର୍ମ, ବର୍ଣ୍ଣ, ଜାତି, ଭାଷା, ଗୋଷ୍ଠୀ, ଅଞ୍ଚଳାଦି ଧର୍ମଭେଦ ଉଗ୍ରତର ଭାବ ଧରୁଛି । ମାତ୍ର ଆଧ୍ୟାତ୍ମିକ ଅର୍ଥରେ ମଧ୍ଯ ଯେଉଁ ବେଦାଦି ଶାସ୍ତ୍ରରେ ବ୍ରହ୍ମଙ୍କୁ ସର୍ବବ୍ୟାପୀ ବୋଲି କୁହାଯାଇଛି ସେଥିରେ ଅଛି ଯେ ବ୍ରହ୍ମ ସମସ୍ତଙ୍କ ମୁହଁରେ ଭୋଜନ କରନ୍ତି । ସମସ୍ତଙ୍କ ଗୋଡ଼ରେ ଚାଲନ୍ତି । ସେଠାରେ ବ୍ରହ୍ମର ଅଂଶରୁ ଶୂଦ୍ର, ପତିତ, ଆଦିବାସୀ, ନାରୀଙ୍କୁ ବାଦ ଦିଆଯାଇ ନାହିଁ ।

ଆର୍ଯ୍ୟ ଧର୍ମ, ସନାତନ ଧର୍ମ, କଣ ସମାନ ଅଧିକାର ଦେଇ ନାହିଁ ? ଯଦି ଦେଇଛି ତେବେ ଲୋକଙ୍କର ଏପରି ଉଗ୍ର ଭାବଧାରା କାହିଁକି ? ବଙ୍ଗ ଦେଶରେ ଅର୍ଦ୍ଧେକରୁ ଅଧିକ ବ୍ୟକ୍ତି ହିନ୍ଦୁ ଧର୍ମ ତ୍ୟାଗକରି ଧର୍ମାନ୍ତର ଗ୍ରହଣ କଲେ । ତାମିଲ୍‌ନାଡ଼ୁ ପ୍ରଦେଶରେ ପ୍ରକାଶ୍ୟରେ ନିମ୍ନ ଶୂଦ୍ରମାନେ ଦେବ ଦେବୀମାନଙ୍କୁ ଲାଞ୍ଛନା କରୁଛନ୍ତି । ଅନ୍ [illegible] ଆଦିବାସୀ ଏ

Digitized by srujanika@gmail.com

ଉତ୍କଳ ଖଣ୍ଡରେ ହିନ୍ଦୁ ଧର୍ମ ତ୍ୟାଗକରି ଧର୍ମାନ୍ତର ଗ୍ରହଣ କଲେ । ବଙ୍ଗଳା ଦେଶରେ ଅର୍ଦ୍ଧେକରୁ ଅଧିକ ବ୍ୟକ୍ତି ହିନ୍ଦୁ ଧର୍ମ ତ୍ୟାଗକରି ଅନ୍ୟ ଧର୍ମ ଗ୍ରହଣ କଲେ । ଏହା କଣ ଧର୍ମହାନିର ଲକ୍ଷଣ ନୁହେଁ ? ପୂର୍ବବଙ୍ଗୀୟ ଉଚ୍ଚ ଜାତିର ଅସହ୍ୟ ଅତ୍ୟାଚାରରେ ଅତ୍ୟାଚାରିତ ହୋଇ ନିମ୍ନତମ ଶୂଦ୍ର ସମାଜ ଧର୍ମତ୍ୟାଗ କରି ମୁସଲମାନ ହେଲେ । ସାମ୍ୟବାଦୀ ଇସଲାମ ଧର୍ମ ଖ୍ରୀଷ୍ଟିଆନ ଧର୍ମ ଅବଲମ୍ବନ କଲେ । ଏହା ଧର୍ମହାନିର ଲକ୍ଷଣ ନୁହେଁ କି ?

ଆମ ଧର୍ମର କେତେକ କଥା ଅନୁଧ୍ୟାନର ଯୋଗ୍ୟ । ଯଦି ଜଣେ ଲୋକ ମୁସଲମାନ ହାତରେ ପାଣି ପିଏ, ତେବେ ତାକୁ ଉତ୍ତପ୍ତ ତେଲ କିମ୍ବା ଘିଅ ପାନ କରାଇ ହତ୍ୟାକର । ଯଦି ଠିକ୍ ଭାବରେ ଚଣ୍ଡିପାଠ ନ କରାଯାଏ ତେବେ ଧର୍ମହାନି ହେବ, ଦେବୀର ଅଭିଶାପ ପଡ଼ିବ । ଠିକ ଭାବରେ ଶାସ୍ତ୍ରପାଠ ନକଲେ ବଂଶହାନି ହେବ । କ୍ରିୟାକାଣ୍ଡରେ ଟିକେ ତ୍ରୁଟି ହେଲେ ସର୍ବନାଶ ହେବ । ଆଚାରଗତ ତ୍ରୁଟି ହେଲେ ବ୍ୟୟସାଧ୍ୟ ପ୍ରାୟଶ୍ଚିତ୍ତ କରିବାକୁ ହେବ ।

## ପରମାନନ୍ଦଦାୟୀ ନାମସଂକୀର୍ତ୍ତନ

ଏସବୁ ସମାଧାନ ପାଇଁ ଶ୍ରୀଚୈତନ୍ୟ ପଥ ଦେଖାଇଲେ । ବିପ୍ଳବାତ୍ମକ ଭାବବର୍ତ୍ତୀୟ ଭକ୍ତିବାଦ ଆରମ୍ଭ କଲେ । ଶ୍ଳୋକ ପଢ଼ିବାରେ ଭୁଲ ହୋଇଗଲେ ସେ କହୁଥିଲେ ଭଗବାନ ତ ଶ୍ଳୋକଗ୍ରାହୀ ନୁହନ୍ତି, ଭାବ ଯଦି ଥାଏ ତେବେ ହେଲା । ସେଥିପାଇଁ ଭଗବାନଙ୍କୁ ଭାବଗ୍ରାହୀ କହନ୍ତି । ଧର୍ମବିଶ୍ୱାସ ଓ ଆଚରଣ ମଧ୍ୟରେ ସାମଞ୍ଜସ୍ୟ ନଥିଲେ ଧର୍ମ ପ୍ରଚାରର ଅର୍ଥ ନାହିଁ, ତାହା ଅନ୍ୟମାନଙ୍କୁ ସ୍ପର୍ଶ କରିବ ନାହିଁ । ସେଥିପାଇଁ ସେ ନିଜେ ମୁରାରି ପଲ୍ଲୀରେ ରହି ବେଶ୍ୟା ଇନ୍ଦିରା ବାଈଙ୍କୁ କୁତ୍ସିତ ନାରକୀୟ ଜୀବନ ଯାତନାରୁ ଉଦ୍ଧାର କରିବା ପାଇଁ ଉପଦେଶ ଦେଲେ । ଦାକ୍ଷିଣାତ୍ୟରେ ଶ୍ରୀଚୈତନ୍ୟଙ୍କୁ ଯେତେବେଳେ ଜଣେ ବ୍ରାହ୍ମଣ ବିଦ୍ରୂପ କରି ପଚାରିଲେ କି କୃଷ୍ଣ କଣ ଏ ହୃଦରେ ଅଛନ୍ତି ? ସେ ପ୍ରେମୋନ୍ମତ୍ତ ହୋଇ କହିଲେ । ସେ ପ୍ରତ୍ୟେକ ସ୍ଥାନରେ ବିଦ୍ୟମାନ, ପ୍ରତ୍ୟେକ ବସ୍ତୁରେ ବିଦ୍ୟମାନ । ବ୍ରାହ୍ମଣଙ୍କୁ ଦୁର୍ଗାଙ୍କ ନିକଟରେ

Digitized by srujanika@gmail.com

ଚ୍ଛେଲମାରିବାକୁ ମନା କଲେ । ଏହିପରି ନାମାଶ୍ରୟୀ ଶ୍ରୀଚୈତନ୍ୟ ବିରାଟ ଧର୍ମବିପ୍ଳବ ଆଣିଥିଲେ । ତପ୍ତ ତେଲ ପିଇବା ବଦଳରେ ନିରନ୍ତର କୃଷ୍ଣ ନାମ ସଙ୍କୀର୍ତ୍ତନ କରିବାକୁ କହିଲେ । ନାମାଭ୍ୟାସେ ପାପଦୋଷ ଯିବ । ମହାପାତକର ମଧ୍ୟ ଏଇ ପ୍ରାୟଶ୍ଚିତ୍ତ । ଶୂଦ୍ରମାନଙ୍କୁ, ନାରୀମାନଙ୍କୁ ସମାନ ଅଧିକାର ଦେଲେ । ସେମାନଙ୍କୁ ଧର୍ମରେ ପ୍ରତିଷ୍ଠିତ କଲେ । ଏହିପରି ସଂକୀର୍ତ୍ତନର ଆବିଷ୍କର୍ତ୍ତା ମହାପ୍ରଭୁ ସାମ୍ୟବାଦ ପ୍ରତିଷ୍ଠା କଲେ । ଧର୍ମାଚରଣରେ ଅବାଞ୍ଛିତ ପ୍ରଥା ଦୂର କଲେ । ଏହି ନାମତତ୍ତ୍ୱ ସବୁ ଅନର୍ଥ ନଷ୍ଟ କରେ । କୃଷ୍ଣପ୍ରେମର ଉଲ୍ଲାସ ଆସିଲେ ସବୁ ଶୁଭୋଦୟ ହୁଏ । ଏ ସଙ୍କୀର୍ତ୍ତନ ସଂସାରର ପାପ ନାଶ କରେ । ଚିତ୍ତ ଶୁଦ୍ଧି କରେ । ସବୁ ଭକ୍ତି ସାଧନ କରି ସବୁସିଦ୍ଧି ଆଣେ । ଶ୍ରୀଚୈତନ୍ୟ ଧର୍ମ କ୍ଷେତ୍ରରେ ସ୍ୱାଧୀନତା ଆଣିଥିଲେ । ଏ ଭାଗବତ ଧର୍ମାଶ୍ରୟୀ ହେଲେ ମହାମୁକ୍ତି ମିଳେ । ଧର୍ମରେ ଭକ୍ତକୁ ଭାଙ୍ଗିଲେ, ଧର୍ମରେ ମାଧୁର୍ଯ୍ୟର ଆଶ୍ରୟ ଦେଲେ । ସନ୍ନ୍ୟାସୀ ନହେଲେ ଧାର୍ମିକ ବୋଲି ସ୍ୱୀକୃତି ମିଳିବ ନାହିଁ—ଏହି ମର୍କଟବୈରାଗ୍ୟ ବିରୁଦ୍ଧରେ ଠିଆହେଲେ ମହାପ୍ରଭୁ । ବୈଷ୍ଣବ ବ୍ୟତୀତ ନାମ ସାଧନ ଅସମ୍ଭବ—ଏଇ କଥାର ବିରୋଧ କରିବାକୁ ଯାଇ ମହାପ୍ରଭୁ କହୁଥିଲେ, "ମୁଁ ସନ୍ନ୍ୟାସୀ ନୁହେଁ, ମୁଁ ମୂର୍ଖ : ମୋର ବେଦାନ୍ତ ପଢ଼ିବାର ଅଧିକାର ନାହିଁ, ସନ୍ନ୍ୟାସୀ ହେବାର ଯୋଗ୍ୟତା ବି ମୋର ନାହିଁ ।" ଏହି ଦୀନତା ହୀନତା କଥା କହୁଥିଲାବେଳେ କେତେ ଯେ ଐଶ୍ୱର୍ଯ୍ୟ ପ୍ରଦର୍ଶନ କରିଛନ୍ତି । ଅହଙ୍କାର ଶୂନ୍ୟ ହୋଇ ଦୀନ ଭାବେ, ଅତି ବିନମ୍ର ସହକାରେ ନାମ କରିବା ହିଁ କଳି ଯୁଗର ଧର୍ମ । ସଙ୍କୀର୍ତ୍ତନ ଏକ ସମୁଦ୍ର ପରି । ଏଥିରେ ବୁଡ଼ିଲେ ଉଠିଲେ ପରମ ଆନନ୍ଦ ମିଳେ । ସଚଳ, ଅଚଳ, ସକଳ ପ୍ରକାର ପ୍ରାଣୀକୁ ଭସାଇ ମହାଭାବ ପ୍ରେମରସରେ ଆସ୍ୱାଦନ କରାଏ । ପ୍ରେମଭକ୍ତି ସବୁସାଧ୍ୟ ସାର ଅଟେ । ଭକ୍ତ ଗାଢ଼ଭକ୍ତ ହେବା ଉଚିତ । ଏହା ଶୁଦ୍ଧ ହେବା ଉଚିତ ଓ ନୂଆର ସହ ହେବା ଉଚିତ । ଜ୍ଞାନହୀନ ଶିଶୁପରି ଭଗବାନଙ୍କୁ ଭକ୍ତି କଲେ ହେବ ଉତ୍ତମା ଭକ୍ତି ! ହୃଦୟର ସରଳତା, କର୍ମର ନିଷ୍ଠାପରତା, ଚିତ୍ତର ବ୍ୟାକୁଳତା ଦ୍ୱାରା ଭଗବାନ ଉପଲବ୍ଧି କରି ହୁଅନ୍ତି । ଏଇ ସୁଗୁଣ ସବୁ ସମ୍ଭବ କେବଳ ହରିନାମ ସଂକୀର୍ତ୍ତନ ଦ୍ୱାରା । ଏହା ସୁଗମ । ଯଜ୍ଞ, ଦାନ, ତୀର୍ଥ ସୁଗମ ନୁହେଁ । ବିଶୁଦ୍ଧ ପ୍ରେମଭକ୍ତି ଆଣିଦେବ ମୁକ୍ତି । ଏହାହିଁ ମନୁଷ୍ୟ ଜୀବନର ଶ୍ରେଷ୍ଠ

Digitized by srujanika@gmail.com

ଶ୍ରୀ ବା ସମ୍ପଦ । ପରମେଶ୍ୱରଙ୍କର ଭକ୍ତ ହୋଇ ପାରିବାହିଁ ମନୁଷ୍ୟ ଜୀବନର ଶ୍ରେଷ୍ଠ କୀର୍ତ୍ତି । ଏହି ଭକ୍ତି ହିଁ ପ୍ରକୃତ ବିଦ୍ୟା । ଜୀବନ କୃଷ୍ଣାର୍ପଣ ହେଲେ କିଛି ଦୁଃଖ ରହେନା; କାରଣ ସେ ତ ଆନନ୍ଦରେ ବୁଡି ରହେ । ସଙ୍ଗରେ ସବୁବେଳେ ଭଗବାନ ରହନ୍ତି । ଶ୍ରୁତି କହେ "ଭକ୍ତବଶ୍ୟ ପୁରୁଷ" । "ଅହଂ ଭକ୍ତ ପରାଧୀନଃ ।"

କୃଷ୍ଣହିଁ ସର୍ବବ୍ୟାପକ, ସର୍ବାତୀତ, ସର୍ବେଶ୍ୱର, ସଚ୍ଚିଦାନନ୍ଦ ଘନ, ସମସ୍ତଙ୍କର ଆତ୍ମା, ଅଖିଳ ବିଶ୍ୱ, ଅଖିଳ ଆତ୍ମା, କୃଷ୍ଣ ପ୍ରୀତିହିଁ ପ୍ରେମ, ଏହାହିଁ ସ୍ଥାୟୀ । ଆତ୍ମସୁଖ ହିଁ କାମ, ଯାହା ଅସ୍ଥାୟୀ । ହ୍ଲାଦିନୀ ଶକ୍ତିର ସାର ହେଉଛି ପ୍ରେମ । ଏହି ପ୍ରେମ ଉଦୟ ହେଲେ ଅଜ୍ଞାନ ଧ୍ୱଂସ ହୁଏ । ଧ୍ୱଂସ ହୁଏ ଦୁଃଖ । ଯେତେବେଳେ ମହାରାଜ ପରୀକ୍ଷିତ ଶୁକଦେବଙ୍କୁ ପଚାରିଲେ ଯେ, ପାପ ଯାଏ କିପରି, ସେ ତାର ଉତ୍ତରରେ କହିଲେ ଯେ, ଭକ୍ତିଦ୍ୱାରା ପାପର ଫଳ ଧ୍ୱଂସ ହୁଏ । ଶ୍ରଦ୍ଧା ସହକାରେ ଭଗବାନଙ୍କୁ ପ୍ରୀତି କରିବା ପାଇଁ ଯାହା କରାଯାଏ, ଏପରି ଶୁଦ୍ଧାତିଶୁଦ୍ଧ ପ୍ରେମ ଥିଲା ଗୋପୀମାନଙ୍କର । ଏଇ ଶୁଦ୍ଧ ପ୍ରେମ, ଶୁଦ୍ଧ ଭକ୍ତିରେ ସ୍ୱାର୍ଥପରତା ନଥାଏ । ତାହା ଶୁଦ୍ଧ ଭକ୍ତି ନୁହଁ, ଯେ ପର୍ଯ୍ୟନ୍ତ ଜ୍ଞାନ ଅଛି । ଜ୍ଞାନ ନଥିଲେ ବି ଭକ୍ତି ଆସିବ ନାହିଁ । ଅର୍ଥାତ୍ ଏଇ ଶୁଦ୍ଧ ଭକ୍ତିରେ ଜ୍ଞାନପୂର୍ଣ୍ଣ ହୋଇ ଅପ୍ରୟୋଜନ ହୋଇପଡ଼େ । ଜ୍ଞାନ କ୍ରିୟାଶୂନ୍ୟ ହୋଇପଡ଼େ । ଭକ୍ତି ଜ୍ଞାନକୁ ଆତ୍ମସାତ କରେ । କାରଣ ଜ୍ଞାନ ଥିବା ପର୍ଯ୍ୟନ୍ତ ଭକ୍ତି ନିଜର ସ୍ୱରୂପରେ ପହଞ୍ଚି ପାରେ ନାହିଁ । ସେଥିପାଇଁ ଜ୍ଞାନକୁ ହଟେଇ ଦେଇ ନୁହଁ, ଜାଣିବାଟା ଏତେ ବେଶୀ ହୁଏ ଯେ ନଜାଣିଲା ପରି । ଜ୍ଞାନର ପରାକାଷ୍ଠାରେ ଜ୍ଞାନୀ ଜ୍ଞାନହୀନ ଶିଶୁ ପରି । କର୍ମ କର୍ମାର୍ପଣ ଦ୍ୱାରା ପୂର୍ଣ୍ଣତାରେ ପହଞ୍ଚି ବିଦାୟ ନିଏ । ତାପରେ ଆସେ ଜ୍ଞାନ । ଜ୍ଞାନ ପୂର୍ଣ୍ଣତାରେ ପହଞ୍ଚି ଜ୍ଞାନ ବିଦାୟ ନିଏ । ଶୁଦ୍ଧା ଭକ୍ତି ଆସେ । ଜ୍ଞାନ କର୍ମର ଆବରଣ ଶୂନ୍ୟ ଭକ୍ତି ଉତ୍ତମା ଭକ୍ତି । ଶ୍ରଦ୍ଧା ଭକ୍ତିରେ ଜ୍ଞାନ କର୍ମ ହରାଇ ବସନ୍ତି । କର୍ମ ଓ ଜ୍ଞାନ ପୂର୍ଣ୍ଣତମଦ୍ୱାରା ହିଁ ନିଜକୁ ନିଜେ ହ୍ରାସ ଦିଅନ୍ତି । ଏହି ଶୂନ୍ୟତାରେ ହିଁ ଜ୍ଞାନର ପରିପୂର୍ଣ୍ଣତା, କର୍ମର ଚରିତାର୍ଥତା । ଜ୍ଞାନଶୂନ୍ୟ ଭକ୍ତି ଆଉ ପ୍ରେମ ଭକ୍ତି ଏକା କଥା । ଜ୍ଞାନଶୂନ୍ୟ ଭକ୍ତିରେ ଜ୍ଞାନାଭାସ ରହିଥାଏ, ପ୍ରେମ ଭକ୍ତିରେ ତାହା ନଥାଏ । କିଛି

Digitized by srujanika@gmail.com

ଆସ୍ୱାଦନ କରିବାକୁ ହେଲେ କ୍ଷୁଧାର ପ୍ରୟୋଜନ । ସେହିପରି କ୍ଷୁଧା ହିଁ ପ୍ରେମ ଭକ୍ତିର ପ୍ରାଣ ।

କେହି ଭକ୍ତ ଯେତେବେଳେ କୃଷ୍ଣ ମାଧୁର୍ଯ୍ୟ ଆସ୍ୱାଦନ କରନ୍ତି ତାଙ୍କ ମନରେ ଭକ୍ତିରସ ଉଦବ୍ରସିତ ହୋଇ ଉଠେ । ଆନନ୍ଦରେ ଚିତ୍ତ ଉଦବେଳିତ ହୋଇ ଉଠେ । ଏହା ଦେଖି ଯଦି ଦର୍ଶକ ମନରେ ଲୋଲୁପତା ଆସେ ତେବେ ବସ୍ତୁପ୍ରାପ୍ତି ପକ୍ଷେ ଏକମାତ୍ର ମୂଲ୍ୟ । ଏହି ଲୋଲୁପ୍ୟ ହିଁ ପ୍ରେମଭକ୍ତିର ପ୍ରାଣ । ପ୍ରେମଭକ୍ତି ବୀଣାର ତାର ପରି । ଏକନିଷ୍ଠତା ତାର ଝଙ୍କାର ଯାହା ମୂକକୁ ମୁଖର କରେ । ଏହି ପ୍ରେମଭକ୍ତି ଯୋଗେ ଶ୍ରୀହରିନାମ ସଂକୀର୍ତ୍ତନଦ୍ୱାରା । ସତ୍ୟଯୁଗରେ ତପସାଧନ ବାରବର୍ଷ ପର୍ଯ୍ୟନ୍ତ, ତ୍ରେତାଯୁଗରେ ଏକବର୍ଷ ଯଜ୍ଞ, ଦ୍ୱାପର ଯୁଗରେ ଶ୍ରୀ ବିଷ୍ଣୁଙ୍କର ଏକମାସ ଅର୍ଚ୍ଚନା କରି ମନୁଷ୍ୟମାନେ ଯେଉଁ ଫଳ ପାଉଥିଲେ କଳିଯୁଗରେ ଶ୍ରୀହରି ସଂକୀର୍ତ୍ତନଦ୍ୱାରା ମନୁଷ୍ୟଙ୍କୁ ସେହି ଫଳ ମିଳେ ।

ଏହି ପ୍ରେମଭକ୍ତି ଅନେକ ପ୍ରକାରର—ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର ଯାହା ଦିଏ ମୋକ୍ଷାନନ୍ଦ । ବ୍ରଜଭକ୍ତି ହୃଦୟର ଭାବମୂଳକ ଅଟେ । ଏ ସବୁଥିରେ ଥାଏ ବିଚିତ୍ରତାମୟ ମଧୁରିମା । ଭକ୍ତି ହେଉଛି ହ୍ଲାଦନୀ ଶକ୍ତିର ଗୋଟିଏ ବୃତ୍ତି, ପ୍ରେମଭକ୍ତି ଭଣ୍ଡାର ରକ୍ଷୟିତ୍ରୀ ଶ୍ରୀରାଧା । ଏହି ଶ୍ରୀରାଧାଙ୍କ କଥା ଭାଗବତରେ ମିଳେନା ଅଥଚ ବୈଷ୍ଣବମାନଙ୍କ ଅସ୍ଥିମଜ୍ଜାରେ ରାଧା ପ୍ରବିଷ୍ଟ । ଏହି ଶ୍ରୀରାଧାଙ୍କ କଥା ଭାଗବତରେ ମିଳେନା, ବିଷ୍ଣୁପୁରାଣରେ ମିଳେନା, ହରିବଂଶରେ ମିଳେନା, ମହାଭାରତରେ ମିଳେନା ମାତ୍ର ରାଧା ହିଁ ନୂତନ ବୈଷ୍ଣବ ଧର୍ମର ପ୍ରାଣକେନ୍ଦ୍ର । ଜୟଦେବ ତାଙ୍କ ଗୀତଗୋବିନ୍ଦରେ ଏହି ନୂତନ ବୈଷ୍ଣବ ଧର୍ମର ଧାରାକୁ ଅବଲମ୍ବନ କରି କହିଛନ୍ତି ଜଗନ୍ମୟୀ ଶକ୍ତି, ସର୍ବସଂହାରିଣୀ ଶ୍ରୀରାଧା । ରାଧା ଆରାଧନା ଅର୍ଥରେ ହିଁ ବ୍ୟବହୃତ ହୁଏ । ଯେ କୃଷ୍ଣଙ୍କ ଆରାଧିକା ସେ କେବଳ ରାଧିକା ଅର୍ଥାତ୍ ରାଧା । କୃଷ୍ଣା ରାଧିକା ଆଦର୍ଶ ଗୋପୀ । ପ୍ରେମ ଭକ୍ତିର ପରାକାଷ୍ଠା ହିଁ ରାଧା । ଶ୍ରୀକୃଷ୍ଣଙ୍କର ଆନନ୍ଦସ୍ୱରୂପ । ତାଙ୍କ ସ୍ୱରୂପଭୂତା ହ୍ଲାଦନୀ ଶକ୍ତି ହିଁ ରାଧା । ଶ୍ରୀକୃଷ୍ଣଙ୍କଠାରୁ ହିଁ ରାଧାର ସ୍ଫୁରଣ । ଶ୍ରୀକୃଷ୍ଣ ଅଙ୍ଗରେ ହିଁ ରାଧାର ବିଳୟ, ସ୍ୱତନ୍ତ୍ର ରୂପ ନାହିଁ । ବ୍ରହ୍ମଙ୍କୁ ଜାଣିବା ଯେପରି ବ୍ରହ୍ମ ହୋଇଯିବା, ସେହିପରି ରାଧାଙ୍କୁ ଜାଣିବାକୁ

Digitized by srujanika@gmail.com

ହେଲେ ପ୍ରେମର ବିକାଶଦ୍ୱାରା ରାଧା ଭାବରେ ପର୍ଯ୍ୟବସିତ ହୁଏ । ରାଧା ଶବ୍ଦ ବଦଳି ଧାରା ହୋଇ ନୟନରୁ ନିର୍ଗତ ହେଲେ ମନୁଷ୍ୟ ଭାବାବେଶ ହୁଏ ।

ଆଉ ଟିକେ ଗଭୀରଭାବରେ ବୁଝିଲେ ହେବ । ପରମାତ୍ମା ହିଁ କୃଷ୍ଣ । ଏ ଜୀବାତ୍ମା ହିଁ ରାଧା । ପ୍ରତ୍ୟେକ ଜୀବ ଦେହରେ ରାଧାକୃଷ୍ଣ ପ୍ରକୃତି ଓ ପୁରୁଷ ରୂପରେ କାର୍ଯ୍ୟ କରୁଛନ୍ତି । ଏହା ଅନୁଭୂତିର କଥା, ଅନୁସନ୍ଧାନ କରିବାର ବସ୍ତୁ ନୁହେଁ ।

## ଆତ୍ମସମର୍ପଣ ହିଁ ଭକ୍ତି

ଭାବ ଓ ପ୍ରେମ ସାତ୍ତ୍ୱିକ ମାନବର ଶୁଦ୍ଧି କରେ । ବିଦ୍ୟା, ବେଦାଧ୍ୟୟନ, ଦାନ, ତପକର୍ମ ଦ୍ୱାରା ପବିତ୍ର ହୁଏନା । ଅନାସକ୍ତ ଭାବ, ସଂକୀର୍ତ୍ତନ ପ୍ରୀତି ମୋହଗ୍ରସ୍ତ କରେନା । ଯେ ପର ଆପଣାର ଭେଦ ରଖେନା ଅହଂଭାବ ଶୂନ୍ୟ, ସର୍ବଦା ଶାନ୍ତ, ଯେ ସର୍ବଭୂତରେ ପରମେଶ୍ୱର ସ୍ୱରୂପ ଦେଖେ, ଯେ ପରମେଶ୍ୱର ସ୍ୱରୂପ ନିଜ ଆତ୍ମାର ସର୍ବଭୂତକୁ ଦେଖେ, ନିଷ୍କାମ କରି ଭଗବାନଙ୍କୁ ସଦା ଆତ୍ମସ୍ଥ କରେ, ସେ ଉତ୍ତମକୋଟିର ଭାଗବତ ଭକ୍ତ । ନିଷ୍କାମ କର୍ମ ସାତ୍ତ୍ୱିକ । ଯେ ଭକ୍ତିର ସହିତ ନିରପେକ୍ଷ ଭାବରେ ନିଜର କର୍ମଦ୍ୱାରା ଭଗବାନଙ୍କର ସେବା କରେ ତାହାକୁ ସାତ୍ତ୍ୱିକ-ବୃତ୍ତି-ସମ୍ପନ୍ନ କୁହାଯାଏ । ସତ୍ତ୍ୱଗୁଣରେ ଉତ୍କର୍ଷ ସାଧନ ହିଁ ଦେବତ୍ୱ । ଗଢ଼େ ସ୍ୱର୍ଗ । ଏ ଧନ, ଜନ, ଇର୍ଷା, ଐଶ୍ୱର୍ଯ୍ୟ, ସକାମ-କର୍ମ ଦ୍ୱାରା ସ୍ୱର୍ଗପ୍ରାପ୍ତି ମଧ୍ୟ ନଶ୍ୱର । ତେଣୁ ନିଷ୍କାମ ସେବାଦ୍ୱାରା ପରମବ୍ରହ୍ମ, ପରମ ଗୁରୁଙ୍କର ଶରଣ ନେଲେ ଦୁଃଖରୁ ନିବୃତ୍ତି ମିଳିବ । ଭଗବତ ଭକ୍ତଙ୍କ ସହିତ ମୈତ୍ରୀ, ଭାଗବତ ପ୍ରତି ଶ୍ରଦ୍ଧା, ଭଗବାନଙ୍କ ଠାରେ ନିଷ୍ଠା ରଖିବା ଉଚିତ । ମଣିଷର ଆତ୍ମା ହିଁ ତାହାର ଗୁରୁ, ଆତ୍ମା ହିଁ ଈଶ୍ୱର । ଗୁରୁବୋଧ ପାଇଁ ଯେଉଁଠାରୁ ମହତ୍ ଗୁଣ ଗ୍ରହଣ କରାଯାଏ, ସେ ସୃଷ୍ଟି ଗୁରୁ, ପ୍ରାଣୀ ଗୁରୁ । ପୃଥିବୀଠାରୁ କ୍ଷମାବ୍ରତ, ଗଛରୁ ପରାମୃତା, ସୂର୍ଯ୍ୟଠାରୁ ତ୍ୟାଗ, ଅଜଗର ସାପଠାରୁ ସନ୍ତୋଷ ଶିକ୍ଷା କରିବା ଉଚିତ । ଏଥିରୁ ବୁଝିବାକୁ ହେବ ଯେ, ଏ ଦେହ ଅନ୍ୟ ପାଇଁ ପରାଧୀନ । ଆତ୍ମା ହିଁ ସତ୍ୟ । ତାର ପ୍ରେରଣାରେ ପ୍ରାଣ ପ୍ରବାହିତ ହୁଏ ।

Digitized by srujanika@gmail.com

ନିଷ୍କାମ କର୍ମ କରି ଭଗବାନଙ୍କ ଉପରେ ଦୃଢ଼ ବିଶ୍ୱାସ ରଖିବା ଉଚିତ । ଅହିଂସା, ସତ୍ୟ, ପ୍ରାଣୀମାତ୍ରରେ ଅନାସକ୍ତି-ଭୋଗ ତ୍ୟାଗ ଆଚରଣ କରିବା ବିଧେୟ । ସ୍ତ୍ରୀ ପୁତ୍ର ଘରଦ୍ୱାର, ସ୍ୱଜନ, ସମ୍ପତ୍ତି ପ୍ରତି ଅନାସକ୍ତ ରହିବା ଉଚିତ । ଭକ୍ତ ଦୟାଳୁ, ସନ୍ତୁଷ୍ଟ, ସତ୍ୟବାଦୀ, ନିଷ୍ପାପ ସମଦର୍ଶୀ, ହିତକାରୀ, ଶାନ୍ତ, ସ୍ୱଧର୍ମରେ ସ୍ଥିର, ମିତାହାରୀ, ଧୈର୍ଯ୍ୟଶାଳୀ, ସ୍ଥିରବୁଦ୍ଧି, ନିରଭିମାନୀ, ନିର୍ବିକାର, ଭଗବାନଙ୍କର ଶରଣାଗତ, ପରମାତ୍ମାଙ୍କଠାରେ ଚିତ୍ତସମର୍ପଣ କରିବା ଉଚିତ ।

ଭଗବାନଙ୍କଠାରେ ସମର୍ପଣ କରିଥିବା ଲୋକକୁ ସୁଖ ମିଳେ । ଯେ ନିଃସ୍ୱ, ଇନ୍ଦ୍ରିୟଜୟୀ, ଶାନ୍ତ, ସମଦର୍ଶୀ ସେହି ସୁଖୀ । ବାସନାଶୂନ୍ୟ ଭକ୍ତ ସୁଖ ଅନୁଭବ କରେ । ଅନନ୍ୟ ଭକ୍ତିଦ୍ୱାରା ଚଣ୍ଡାଳ ହୀନଜୀବନ କୁଳରୁ ପବିତ୍ର ହୁଏ । ଯାହାର ଚିତ୍ତ ପ୍ରେମାର୍ଦ୍ର, ଯାହାର ହୃଦୟ ଶୁଦ୍ଧ, ଯା'ର ପୁଲକିତ ହୃଦୟ, ଆନନ୍ଦାଶ୍ରୁ, ଗଦ୍‌ଗଦ୍‌ବାଣୀ ସେ ଭକ୍ତ ସମୁଦାୟ ଜଗତକୁ ପବିତ୍ର କରେ । ଭଗବାନଙ୍କୁ ଚିନ୍ତା କରୁଥିବା ଭକ୍ତର ଅନ୍ତଃକରଣ ଭଗବାନଙ୍କ ସ୍ୱରୂପରେ ଲୀନ ହୁଏ । ଭକ୍ତିଯୋଗକୁ ମୂଳ କରି ଅଖଣ୍ଡ ଭଜନ ଦ୍ୱାରା ବାସନା ନଷ୍ଟ ହୁଏ, ପରମେଶ୍ୱର ତା ହୃଦୟରେ ବାସ କରନ୍ତି । ସାଧୁସଙ୍ଗରୁ ଜାତ ଭକ୍ତିଯୋଗ ଆଶ୍ରୟ ହିଁ ଆଶ୍ରୟ । ହିଂସା ନ କରିବା, ସତ୍ୟକୁ ନ ଛାଡ଼ିବା, ଚୋରି ନ କରିବା, କାମକ୍ରୋଧ, ଲୋଭର ବଶ ନ ହେବା, ପ୍ରାଣୀର କଲ୍ୟାଣ କରିବା ସବୁ ଧର୍ମ ପାଇଁ ଧର୍ମ ଅଟେ । ସବୁ ପ୍ରାଣୀ ମଧ୍ୟରେ ପରମେଶ୍ୱରଙ୍କୁ ଦେଖିବା ହିଁ ଭକ୍ତର କାର୍ଯ୍ୟ । ଭଗବାନଙ୍କ ପ୍ରତି ଭକ୍ତି ଜନ୍ମିଲେ ତାଙ୍କ ଅମୃତ କଥା, ଶ୍ରଦ୍ଧା, ନିରନ୍ତର କୀର୍ତ୍ତନ, ଅର୍ଚ୍ଚନାରେ ଅଖଣ୍ଡ ଓ ନିଷ୍ଠା ତାଙ୍କ ସେବାରେ ଆଦର ଆସେ । ସବୁ କର୍ମ ଭଗବାନଙ୍କ ପାଇଁ ବିନିଯୋଗ କଲେ ଭଗବାନଙ୍କଠାରେ ଆତ୍ମନିବେଦନ କଲେ ହୃଦୟ ପ୍ରେମମୟ ହୁଏ । ସତ୍ତ୍ୱଗୁଣଦ୍ୱାରା ବିକଶିତ, ଶାନ୍ତଚିତ୍ତ ଯେତେବେଳେ ପରମେଶ୍ୱରଙ୍କଠାରେ ଅର୍ପିତ ହୁଏ ସାଧକର ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ ଆପେ ଆପେ ଆସେ ।

ମନ ହିଁ ବଡ଼ ଶତ୍ରୁ । ମନକୁ ଯେ ବଶକରିପାରେ, ସେ ହେଉଛି ଦେବତାମାନଙ୍କର ଦେବତା । ମନକୁ ବଶ କରିବା ପରମ ଯୋଗ । ସତ୍‌କର୍ମ ଏକାଗ୍ରତା ଉତ୍ତମ ବ୍ରତର ଶେଷଫଳ ।

Digitized by srujanika@gmail.com

ଆତ୍ମା ଅମର । ଆତ୍ମା ସୂକ୍ଷ୍ମ ଶରୀରକୁ ଅନୁସରଣ କରେ । ଦେହସ୍ଥ ଆତ୍ମାର ଯେ ଏଇ ଶରୀର ଏ କଥା ମଧ୍ୟ ମିଥ୍ୟା । ପ୍ରକୃତିଠାରୁ ଆତ୍ମା ପୃଥକ । ଆତ୍ମାହିଁ ଈଶ୍ୱର । ସବୁ ପ୍ରାଣୀ ମଧ୍ୟରେ ଓ ନିଜ ଭିତରେ ଏକ ପରମାତ୍ମା ଅଛନ୍ତି । ଏହାହିଁ ଏକାତ୍ମତା, ଏହାହିଁ ବିଜ୍ଞାନ । ନିରପେକ୍ଷତା ହିଁ ସର୍ବୋତ୍ତମ କଲ୍ୟାଣ । ଶୁଦ୍ଧ ପ୍ରବୁଦ୍ଧ ଆତ୍ମାକୁ ସବୁ ପ୍ରାଣୀମାନଙ୍କ ମଧ୍ୟରେ ଓ ନିଜ ମଧ୍ୟରେ ଦେଖିବ । ନିଜ ଆତ୍ମାରେ ଓ ଭଗବାନଙ୍କଠାରେ ଅଭେଦ ଦୃଷ୍ଟି ହିଁ ବିଦ୍ୟା ।

ଶାସ୍ତ୍ରଜନ୍ୟ ଜ୍ଞାନ, ଅନୁଭବଜନ୍ୟ ବିଜ୍ଞାନ, ଆତ୍ମଦର୍ଶନଦ୍ୱାରା ମନୁଷ୍ୟଙ୍କୁ ଶାନ୍ତି, ସନ୍ତୋଷ ମିଳେ ।

## ଆଜିର ଦୁଃଖ, ଆଜିର ଚିନ୍ତା, ଆଜିର କ୍ଷୋଭ :

ଅତୀତରେ ଧର୍ମପାଳନ, ଧର୍ମଧାରଣ ପ୍ରତ୍ୟେକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିପାରିଥିଲେ ; ସଫଳତାର ଶୀର୍ଷରେ ପହଞ୍ଚିଥିଲେ । ଅମର ସଂସ୍କୃତି, ଅମର ପ୍ରେମ ମାନବ ସମାଜ ମଧ୍ୟରେ ଶ୍ରେଷ୍ଠତାର ଜ୍ୟୋତିରେ ଭାସ୍ୱର ଥିଲା । ବର୍ତ୍ତମାନ ଅନେକ କ୍ଷେତ୍ରରେ ସ୍ୱନ, ନୈତିକ ଦୁରବସ୍ଥା, ଧାର୍ମିକ ଦୁରବସ୍ଥା ଆସିଛି — ଶତ୍ରୁତା, ଅବିଶ୍ୱାସ, ହିଂସା, ନିଷ୍ଠୁରତା, ଅଜ୍ଞାନ, ଅବସାଦ, ଅଶାନ୍ତି, ଦାରିଦ୍ର୍ୟ, ଅସହାୟତା, ହତାଶା, ସାମାଜିକ ବୈଷମ୍ୟ । ଯାହା ଅଛି ତାହା ସାମାନ୍ୟ । ଅଧାର୍ମିକ ଜନର ପୁନରୁତ୍ଥାନ ହିଁ ଅମର ହେବ ପ୍ରାତଃ, ଯନ୍ତ୍ରା ସହେ ଥିଲେ । ଏହି ଅଧାର୍ମିକ ବିନାଶ, ଏଇ ଅଧାର୍ମିକ ବିପ୍ଳବ, ଏଇ କରୁଣ ଅଧଃପତିତ ବିପ୍ଳବ ଗତି ତୋଳିବ ସାମୂହିକ ଚରିତ୍ରନାଶ, ଯାହା ଗତି ତୋଳିବ ବସୁଧାକୁ ଏକ ବୃହତ୍ତରେ ।

ଅନେକ କହନ୍ତି ଧର୍ମ ଚର୍ଚ୍ଚା, ଅନେକତମ ଅନେକ ଭକ୍ତିଭାବ, ନିର୍ମଳତା, ବିଶ୍ୱସ୍ତତା ; ଚରିତ୍ରବାନ ମନସ୍ୱୀ, ମହାଭକ୍ତ, ମହାସାଧୁ, ମହାତ୍ମା । ଆଜି ମନେହୁଏ ତାହା ଦେଖାଯିବ ନାହିଁ ସାମର୍ଥ୍ୟ, ପାଟବ, ଐକ୍ୟତା, ଏବଂ ପ୍ରତିଭା । ମନୁଷ୍ୟର ଅନ୍ତର୍ନିହିତ ସ୍ୱାଭାବିକ ପ୍ରାକୃତିକ ଶକ୍ତିକୁ ପରିତ୍ୟାଗ କରିବ, ଏକ ଅନନ୍ତ ଶକ୍ତିଶାଳୀ ସ୍ଥିତିସ୍ଥାପକ ଏଇ ଜଗତରେ ବିସ୍ତାର କରି

Digitized by srujanika@gmail.com

ଫୁଟିଉଠିବ ମାନବର ବିକାଶ - ସତ୍-ଚିତ୍-ଆନନ୍ଦ, ମର୍ମସ୍ପର୍ଶୀ ନୃତ୍ୟ-ଗୀତ-ପ୍ରାର୍ଥନା ମାଧ୍ୟମରେ । ସେ ବଂଶୀସ୍ୱନରେ ଯାହା ଦିନେ ଉଦ୍ଭାସିତ କରିଥିଲା ଯମୁନା ନଦୀ, ଉଦ୍ଭାସିତ କରିଥିଲା ବୃନ୍ଦାରଣ୍ୟ, ଧେନୁବତ୍ସା, ଗୋପ-ନାଗରୀ ବୃନ୍ଦ, କେଳିକଦମ୍ବାଦି ବୃକ୍ଷ । ଏହା ହୃଦୟରେ ଜାଗ୍ରତ କରିବ ଅଭୂତପୂର୍ବ ଅନୁଭୂତି, ଏକ ମହାନନ୍ଦ, ଏକ ସରସତା, ଏକ ଅପୂର୍ବ ମାଧୁର୍ଯ୍ୟ । ଭରାଇ-ଦେବ ଏକ ଅସରନ୍ତି ଐଶ୍ୱର୍ଯ୍ୟ, ସ୍ଵାବିନ୍ୟତ କରିବ ଏକ ମହା ଭାବରେ । ଏହି ଆତ୍ମପ୍ରବାହ ବୁହାଇଦେବ ସମସ୍ତଙ୍କ ଆତ୍ମାରେ, ଅନୁଭବ କରାଇବ ନିଜ ହୃଦୟରେ ଜୀବନ୍ତ ଭଗବାନ । ଏ ସତ୍‌କାର୍ଯ୍ୟ ବାଦ ଆଣିବ ବାଳବିକାଶ, ତରୁଣର ଜୟଯାତ୍ରା, ବୃଦ୍ଧର ନୂତନ ଜୀବନ । ଗଢ଼ାହେବ ସର୍ବଶ୍ରେଷ୍ଠ ସମାଜ । ଏ ଧୂଳିର ଧରଣୀ ହେବ ସ୍ୱର୍ଗ । ଭଗବାନଙ୍କ ପାଇଁ ଉଦ୍ଦିଷ୍ଟ ଏଇ ନୃତ୍ୟ-ଗୀତ-ପ୍ରାର୍ଥନା ଆଣିବ ଘୃଣାର ବିସର୍ଜନ, ଦୁଃଖର ଅବସାନ, କ୍ରୋଧ, ପରଶ୍ରୀ-କାତରତା, ଅହଂକାର, ଔଦ୍ଧତ୍ୟର ନାଶ । ଏହାହିଁ ଏହାର ବିଚକ୍ଷଣତା, ବୈଶିଷ୍ଟ୍ୟ । ଏହା ପ୍ରାଣୀକୁ ସରଳ କରି ଧନୀ, ନିର୍ଦ୍ଧନ, ମୂର୍ଖ, ପଣ୍ଡିତ, ଦୁଃସ୍ଥ, ସୁସ୍ଥ, ବ୍ରାହ୍ମଣ, ଚଣ୍ଡାଳର ଭେଦଭାବ ଭୁଲାଇ ଦିଏ । ଏହାହିଁ ଏ ଯୁଗର ଧର୍ମ ପ୍ରେମ ଧର୍ମ, ଭକ୍ତି ଧର୍ମ । ଏହାଦ୍ୱାରା ମନୁଷ୍ୟ ଜୀବନ ହୁଏ ରୂପାନ୍ତରିତ— ସତ୍ୟଂ-ଶିବଂ-ସୁନ୍ଦରମ୍ । ଏ ଦିଏ ଭକ୍ତି ସତ୍—ସତ୍ୟମ୍, ଆଣେ ଜାଗୃତି, କର୍ମଶୀଳତା, ଚୈତନ୍ୟ, ଅନୁଭୂତି, ଚିତ୍—ଶିବମ୍, ଦିଏ ଆଲୋକ, ଦୀପ୍ତି, ସଙ୍ଗୀତ, ମାଧୁର୍ଯ୍ୟ । ଆନନ୍ଦ—ସୁନ୍ଦରମ୍ । ଭଗବାନ ନିରନ୍ତର ମୁରଲୀ ବଜାଇ ସସ୍ନେହେ ଡାକୁଛନ୍ତି । କଳିଗ୍ରସ୍ତ ଜୀବ ଶୁଣିପାରୁନାହିଁ । ସଂସାରର କୁତ୍ସିତ-କୋଳାହଳ ଦ୍ୱାରା କାନ ବଧିର । ଶୁଭୁ ନାହିଁ । ମାତ୍ର ସେ ଧ୍ୱନି ସଦା ଜାଗ୍ରତ । ଉଠ, ଜାଗ । ହୃଦୟକୁ ସୁମାର୍ଜିତ କର, ଶୁଦ୍ଧ ପ୍ରେମମୟ କର । ଏବେ ବି ଶୁଣି ହେବ ।

---

ସତ୍ୟବ୍ରତ ପ୍ରେସ କଟକ-୧

Digitized by srujanika@gmail.com

# ଲେଖକଙ୍କର କେତୋଟି ଅବିସ୍ମରଣୀୟ କୃତୀ

୧ । ସ୍ୱାସ୍ଥ୍ୟ ଓ ସମାଜ (ବୟସ୍କଙ୍କ ପାଇଁ)
୨ । ସ୍ୱାସ୍ଥ୍ୟ ଓ ସମାଜ (ଶିଶୁଙ୍କ ପାଇଁ)
୩ । ସଂଧାନ (କେତୋଟି ଗଳ୍ପର ସମଷ୍ଟି)—ଦ୍ୱିତୀୟ ମୁଦ୍ରଣ
୪ । ପାନ୍ଥଅଶ୍ରୁ ( ,, )
୫ । ଦୁଃସ୍ଥ ମାନବ
୬ । ଜୀବନ ରଙ୍ଗମଞ୍ଚର ରାମନାମ କାହିଁକି ?
୭ । ରାମକୃଷ୍ଣ ଓ ଉତ୍କଳଭୂମି
୮ । ଶ୍ରୀକୃଷ୍ଣଙ୍କ ସାମ୍ୟବାଦ
୯ । **Social Medicine**
୧୦ । **Great Voyage**
୧୧ । **Echo**
୧୨ । ଭାଗବତ ଧର୍ମ ସମୀକ୍ଷା
୧୩ । ରାମାୟଣ ଚେତନାର ଏକ ଝଲକ (ଦ୍ୱିତୀୟ ମୁଦ୍ରଣ)
୧୪ । ଚିନ୍ତା ଓ ଚେତନା
୧୫ । ପ୍ରେମଧର୍ମ (ଦ୍ୱିତୀୟ ମୁଦ୍ରଣ)
୧୬ । ସ୍ୱପ୍ନ ସମ୍ଭାର
୧୭ । ସବୁ ଧର୍ମର ଧର୍ମ ପ୍ରେମଧର୍ମ
୧୮ । ଧର୍ମ, ସଂସ୍କୃତି, ଦର୍ଶନ ଓ ବିଜ୍ଞାନ
୧୯ । ପ୍ରେମ ପ୍ରଦୀପ
୨୦ । ସୁକ୍ତି ସୁରଭି
୨୧ । ଭାରତ ଦର୍ଶନ

Digitized by srujanika@gmail.com

